# ମଇ ଦିବସର ଇତିହାସ



ଶ୍ରୀ ଦୁର୍ଗାଚରଣ ମହାନ୍ତି

# ମଇ ଦିବସର ଇତିହାସ

ଲେଖକ :
**ଦୁର୍ଗାଚରଣ ମହାନ୍ତି**
ବାଦାମବାଡ଼ି, କଟକ-୧୨

ପ୍ରକାଶକ :
**ନବଯୁଗ ଗ୍ରନ୍ଥାଳୟ**
ବଲକବାଟି ରୋଡ଼, କଟକ-୭୫୩୦୦୧

ମୁଦ୍ରଣ :
**ନବଯୁଗ ପ୍ରେସ**
ପାଲିତ ପଡ଼ା, କଟକ-୨

ପ୍ରଥମ ସଂସ୍କରଣ, ଏପ୍ରିଲ, ୧୯୫୫
ଦ୍ୱିତୀୟ ସଂସ୍କରଣ, ମଇ, ୧୯୭୫
ପରିବର୍ତ୍ତିତ ତୃତୀୟ ସଂସ୍କରଣ, ମଇ, ୧୯୮୭

ମୂଲ୍ୟ—ଦୁଇ ଟଙ୍କା

## History of the May Day

*Written by* :
**Durga Charana Mohanty**
Badambadi, Cuttack-12

*Publisher* :
**Nabajuga Granthalaya**
Balrakabati Road, Cuttack-1

*Printed* :
**Nabajuga Press**
Palitpara, Cuttack-2

*1st Edition*—April, 1955
*2nd Edition*—May, 1975
*Revised 3rd Edition*
April 1980

Price—Rupees TWO only

( ଏକ )

# ମଇ ଦିବସର ଶତବାର୍ଷିକୀ

୧୯୮୬ ମସିହାରେ ମଇ ଦିବସର ଶତବାର୍ଷିକୀ ପଡ଼ୁଛି । ୧୮୮୬ ମସିହାରେ ଆମେରିକାର ଚିକାଗୋ ସହରରେ ସେ ଦେଶର ଶ୍ରମିକମାନେ ଦିନକୁ ୮ ଘଣ୍ଟା କାମର ସମୟ ଦାବୀ କରି ଆନ୍ଦୋଳନ କରିବାରୁ ପୁଲିସ ସେମାନଙ୍କ ଉପରେ ଗୁଳି ଚଳାଇ ରକ୍ତର ଗଙ୍ଗା ଛୁଟାଇଥିଲେ । ସେ ଦିନ ଆଉ ଆଜି ! ଏଇ ଶହେ ବର୍ଷ ଭିତରେ ଦୁନିଆ ଭିତରେ ବହୁ ପରିବର୍ତ୍ତନ । ଅବଶ୍ୟ ପୃଥିବୀର କେତେକ ମୁଷ୍ଟିମେୟ ଦେଶଅଛି ଏବଂ ବିଭିନ୍ନ ଦେଶରେ କାଁ ଭାଁ ଅଞ୍ଚଳ ଅଛି, ଯେଉଁଠି ଏବେ ବି ୮ ଘଣ୍ଟା କାମପାଇଁ ଶ୍ରମିକଙ୍କୁ ସଂଗ୍ରାମ କରିବାକୁ ପଡ଼ୁଛି । କିନ୍ତୁ ସେଇଟା ଗୋଟାଏ ସାଧାରଣରୁ ବ୍ୟତିକ୍ରମ । ଆଜି ଶ୍ରମିକଶ୍ରେଣୀ ବିଶ୍ୱର ଏକ ତୃତୀୟାଂଶରେ ନିଜର ସମାଜବାଦୀ ଶାସନ ପ୍ରତିଷ୍ଠିତ କରିଛି । ସମାଜବାଦୀ ସ୍ତରକୁ ନଯାଇଥିଲେ ମଧ୍ୟ ଏସିଆ, ଆଫ୍ରିକା, ଲାଟିନ ଆମେରିକା ଓ ମଧ୍ୟଆମେରିକା ପ୍ରଭୃତିରେ କେତେକ ଦେଶରେ ନୂତନ ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥା ଚଳାଇଛନ୍ତି । ସେଠାରେ ପୁଞ୍ଜିବାଦୀ ଶ୍ରେଣୀର ଏକାଏକ କ୍ଷମତା ବଦଳରେ ଏକ ଅଣ ପୁଞ୍ଜିବାଦୀ ପଥ ଅନୁସରଣ କରୁଛନ୍ତି ଏବଂ ଏଇ-ବାଟରେ ଖୁବ ଶୀଘ୍ର ସମାଜବାଦ ଆଡ଼କୁ ଅଗ୍ରସର ହେବେ । ଦ୍ୱିତୀୟ ମହାଯୁଦ୍ଧରେ ଫାସିଷ୍ଟ ଶକ୍ତିମାନଙ୍କର ପରାଜୟ ପରେ ସାମ୍ରାଜ୍ୟବାଦ ସାମୂହିକ ଭାବରେ ଦୁର୍ବଳ ହେଲା ଏବଂ ଅଜି ନାମିବିଆ ଛଡ଼ା ପୃଥିବୀର ସମସ୍ତ ପରାଧୀନ ଦେଶ ଓ ଉପନିବେଶ ସବୁ ସାମ୍ରାଜ୍ୟବାଦ କବଳରୁ ନିଜର ସ୍ୱାଧୀନତା ହାସଲ କରିଛନ୍ତି । ୟୁରୋପ ଓ ଆମେରିକାର ବିକଶିତ ପୁଞ୍ଜିବାଦୀ ଦେଶର ଶ୍ରମିକଶ୍ରେଣୀ ଖୁବ୍ ସଂଗଠିତ ଏବଂ ଶକ୍ତିଶାଳୀ । ସେମାନେ ନିଜ ଦେଶରେ ଶ୍ରମିକଶ୍ରେଣୀ ଓ ଖଟିଖିଆ ଜନସାଧାରଣଙ୍କର ସ୍ୱାର୍ଥ ରକ୍ଷା ପାଇଁ ବ୍ୟାପକ ସଂଗ୍ରାମ ପରିଚାଳିତ କରିପାରୁଛନ୍ତି ଏବଂ ଦେଶର ଅର୍ଥ-ନୈତିକ ଓ ରାଜନୈତିକ ପରିସ୍ଥିତିକୁ ପ୍ରଭାବିତ କରିପାରୁଛନ୍ତି । ପୂର୍ବତନ ଉପନିବେଶ ତଥା ନବସ୍ୱାଧୀନ ଦେଶମାନେ ଆଜି ନିରପେକ୍ଷ ଆନ୍ଦୋଳନ ଭିତରେ ପୃଥିବୀରେ ସଂଗଠିତ ଏବଂ ସାମ୍ରାଜ୍ୟବାଦ ବିରୋଧରେ ଏକ ବ୍ୟାପକ ସଂଗ୍ରାମ ପରିଚାଳିତ

ପାଇଲା । ସଂଗଠିତ ଶ୍ରମିକ ଆନ୍ଦୋଳନ କେତେକ ଜାଗାରେ ଏ ଦାବୀ ନିଜର ଲଢ଼େଇ ଜରିଆରେ ହାସଲ କଲେ । ଏ ଆନ୍ଦୋଳନ କେବଳ ଆମେରିକାରେ ସୀମାବଦ୍ଧ ରହିଲା ନାହିଁ—ଯେଉଁଠି ପୁଞ୍ଜିବାଦ ଶ୍ରମିକ ଶ୍ରେଣୀକୁ ଶୋଷଣ କରୁଥିଲା, ସେଠାରେ ଏ ଆନ୍ଦୋଳନ ଦେଖାଦେଲା । ସୁଦୂର ଅଷ୍ଟ୍ରେଲିଆରେ ମଧ୍ୟ ଘର ତିଆରି କରିବା ଶ୍ରମିକମାନେ (ରାଜମିସ୍ତ୍ରୀ ଇତ୍ୟାଦି) ଦାବୀ ଉଠାଇଲେ '୮ ଘଣ୍ଟା କାମ, ୮ ଘଣ୍ଟା ଖେଳାବୁଲା ଓ ୮ ଘଣ୍ଟା ବିଶ୍ରାମ ।' ସେମାନେ ୧୮୫୬ ମସିହାରେ ୮ ଘଣ୍ଟା କାମର ଦିନ ହାସଲ କଲେ ।

## ଆମେରିକାରେ ୮ ଘଣ୍ଟା କାମ ପାଇଁ ସଂଗ୍ରାମ

୮ ଘଣ୍ଟା କାମ ପାଇଁ ଦାବୀ ଉପରୁହିଁ ଆଜିର ଐତିହାସିକ ମଇ ଦିବସର ଜନ୍ମ । ୧୮୮୪ ମସିହାରେ ଆମେରିକାରେ ଏହା ଉପରେ ଧାରାବାହିକ ଆନ୍ଦୋଳନ ଆରମ୍ଭ ହେଲା । ଏହା ପୂର୍ବରୁ ଆମେରିକାର ଜାତୀୟ ଶ୍ରମିକ ଅନୁଷ୍ଠାନ "ଦି ନ୍ୟାସନାଲ ଲେବର ୟୁନିଅନ" କାମର ସମୟ କମାଇବା ଦାବୀ ଉପରେ ଆନ୍ଦୋଳନ ଆରମ୍ଭ କରିଥିଲେ । କିନ୍ତୁ ୧୮୬୧-୬୫ରେ ଆମେରିକାର ଗୃହଯୁଦ୍ଧ ଫଳରେ କେତେକ ମୁଷ୍ଟିମେୟ ଜାତୀୟ ଟ୍ରେଡ଼ ୟୁନିଅନ ଭାଙ୍ଗି ପଡ଼ିଲା । ସେଥିପାଇଁ ସେ ଆନ୍ଦୋଳନର ଜୋର କମିଗଲା । ୧୮୬୬ ଅଗଷ୍ଟ ୨୦ ତାରିଖ ଦିନ ବାଲଟି-ମୋର ସହରରେ ପ୍ରାୟ ୪୦ଟି ଟ୍ରେଡ଼ ୟୁନିଅନ ଏକାଠି ହୋଇ ଲେବର ୟୁନିଅନ ଗଢ଼ିଲେ । ଏହାର ନେତୃତ୍ୱ ନେଲେ 'ମୋଲଡ଼ରସ୍ ୟୁନିଅନ'ର ନେତା ଉଇ-ଲିୟମ ଏଚ ସିଲଭିସ୍ । ସିଲ୍‌ଭିସ୍ ଯୁବକ ହେଲେ ମଧ୍ୟ ଆମେରିକାର ଶ୍ରମିକ ଆନ୍ଦୋଳନରେ ଜଣେ ଖ୍ୟାତ୍ୟନାମା ଲୋକ । ସେ ପ୍ରଥମେ ଲଣ୍ଡନରେ କାର୍ଲ-ମାର୍କସଙ୍କ ନେତୃତ୍ୱରେ ଗଢ଼ା ଯାଇଥିବା 'ପ୍ରଥମ ଆନ୍ତର୍ଜାତିକ' ସହିତ ସମ୍ପର୍କ ପ୍ରତିଷ୍ଠା କଲେ ଓ 'ନ୍ୟାସନାଲ ଲେବର ୟୁନିଅନ' ପ୍ରଥମ ଆନ୍ତର୍ଜାତିକ ସହିତ ଯୋଗଦେଲା ।

୧୮୬୬ରେ ନ୍ୟାସନାଲ ଲେବର ୟୁନିଅନ ୮ ଘଣ୍ଟା କାମ ପାଇଁ ଦାବୀ ଉଠାଇଲା । ଚାରିଆଡ଼େ ୮ ଘଣ୍ଟା କାମର ଦିନ ଲାଗି ଆନ୍ଦୋଳନ ଗଢ଼ି ଉଠିଲା ଓ ୮ ଘଣ୍ଟା କାମ କମିଟିମାନ ଗଠିତ ହେଲା । ୧୮୬୮ରେ ବାଧ୍ୟ ହୋଇ ଆମେରିକାର କେତେକ ରାଜ୍ୟ ସରକାର ୮ ଘଣ୍ଟା ଦାବୀକୁ ମାନିନେଲେ ଓ ଯୁକ୍ତରାଷ୍ଟ୍ର ସରକାର ଆଇନ ପାସ କଲେ । ଏ ଆନ୍ଦୋଳନର ପ୍ରଧାନ ନେତା ହେଲେ ବୋଷ୍ଟନର ମେସିନିଷ୍ଟ 'ଇରାଷ୍ଟିଓ୍ୱାର୍ଡ' ।

ସିଲଭିସଙ୍କ ନେତୃତ୍ୱରେ ଆମେରିକାର ଶ୍ରମିକ ଆନ୍ଦୋଳନ ଉଚ୍ଚ ସ୍ତରକୁ ଯିବାକୁ ଆରମ୍ଭ କଲା । ସମସ୍ତ ସଂସ୍କାରବାଦ ବିରୁଦ୍ଧରେ ସଂଗ୍ରାମ କରି ସିଲଭିସ ଶ୍ରମିକ ଶ୍ରେଣୀର ସ୍ୱାଧୀନ ରାଜନୈତିକ ସଂଗ୍ରାମ ଉପରେ ଜୋର ଦେଲେ ଏବଂ ସଫଳ

ହେଲେ । ଆମେରିକାର ଶ୍ରମିକ ଆନ୍ଦୋଳନ ସିଲଭିସଙ୍କ ନେତୃତ୍ୱ ଯୋଗୁଁ ବିରାଟ ପଦକ୍ଷେପ ନେଲେ । ୧୮୬୯ରେ ସିଲଭିସ୍ 'ପ୍ରଥମ ଆନ୍ତର୍ଜାତିକ'ର ବାସିଲ କଂଗ୍ରେସରେ ନ୍ୟାସନାଲ ଲେବର ୟୁନିଅନର ପ୍ରତିନିଧିତ୍ୱରେ ଯୋଗଦେବାର କଥା ଥିଲା । କିନ୍ତୁ କଂଗ୍ରେସର ଅବ୍ୟବହିତ ପୂର୍ବରୁ ତାଙ୍କର ମୃତ୍ୟୁ ଘଟିଲା । ସିଲଭିସଙ୍କ ମୃତ୍ୟୁ ଆମେରିକାର ଶ୍ରମିକ ଆନ୍ଦୋଳନକୁ ଖୁବ୍ ଜୋରରେ ଆଘାତ ଦେଲା ଏବଂ ନ୍ୟାସନାଲ ଲେବର ୟୁନିଅନ ଭାଙ୍ଗି ପଡ଼ିଲା ।

## ୮ ଘଣ୍ଟା କାମର ସ୍ଲୋଗାନ୍ ଏକ ବିପ୍ଳବୀ ଆବାଜ

ସିଲଭିସଙ୍କ ମୃତ୍ୟୁ ଘଟିଲା । କିନ୍ତୁ ତାଙ୍କର ବିପ୍ଳବୀ ନେତୃତ୍ୱ ଜୀବନ୍ତ ରହିଲା । ୮ ଘଣ୍ଟା କାମର ସ୍ଲୋଗାନ କେବଳ ଆମେରିକା ନୁହେଁ, ସମସ୍ତ ପୃଥିବୀର ଶ୍ରମିକ-ଶ୍ରେଣୀ ପାଇଁ ଏକ ବିପ୍ଳବୀ ଆବାଜ । ପ୍ରଥମ ଆନ୍ତର୍ଜାତିକର ୧୮୬୬ ଜେନେଭା କଂଗ୍ରେସ ୮ ଘଣ୍ଟା କାମର ଦାବୀକୁ ଶ୍ରମିକଶ୍ରେଣୀର ମୁକ୍ତି ଆନ୍ଦୋଳନର ଏକ ପ୍ରାଥମିକ ଆବଶ୍ୟକତା ବୋଲି ନିର୍ଦ୍ଧାରଣ କଲେ । ନ୍ୟାସନାଲ ଲେବର ୟୁନିଅନର ୧୮୬୬ ଅଗଷ୍ଟ ପ୍ରସ୍ତାବ ଉପରେ ଆଧୁନିକ ବୈଜ୍ଞାନିକ ସାମ୍ୟବାଦର ପିତା କାର୍ଲମାର୍କସ ୧୮୬୭ରେ ତାଙ୍କର 'କ୍ୟାପିଟାଲ'ର ପ୍ରଥମ ଭାଗରେ ଏ ଦାବୀର ତାରିଫ କରିଛନ୍ତି ଏବଂ ନିଗ୍ରୋ ଓ ଶ୍ୱେତ ଶ୍ରମିକମାନଙ୍କର ଏକତା ପାଇଁ ଆହ୍ୱାନ ଦେଇ ଲେଖିଛନ୍ତି—

"ଆମେରିକାର ଯୁକ୍ତରାଷ୍ଟ୍ରରେ ଯେ ପର୍ଯ୍ୟନ୍ତ ରିପବ୍ଲିକ୍‌ର ଗୋଟିଏ ଭାଗକୁ ଦାସତ୍ୱ କଳଙ୍କିତ କରୁଛି, ସେ ପର୍ଯ୍ୟନ୍ତ ଯେ କୌଣସି ସ୍ୱାଧୀନ ଶ୍ରମିକ ଆନ୍ଦୋଳନ ଠିଆ ହୋଇଛି, ତାହା ପଙ୍ଗୁ ହୋଇଯାଇଛି । ଯେଉଁଠି କଳା ଚମଡ଼ାର ଶ୍ରମିକ ଉପରେ ଆକ୍ରମଣ ହେଉଛି, ସେଠାରେ ଧଳା ଚମଡ଼ାର ଶ୍ରମିକ କେବେ ହେଲେ ମୁକ୍ତ ହେବ ନାହିଁ । କିନ୍ତୁ ଦାସତ୍ୱର ମୃତ୍ୟୁ ଭିତରୁ ଗୋଟିଏ ନୂତନ ଶକ୍ତିଶାଳୀ ଜୀବନ ବାହାରି ଆସିଲା । ଗୃହ ଯୁଦ୍ଧର ପ୍ରଥମ ଫଳ ହେଉଛି ୮ ଘଣ୍ଟା କାମ ପାଇଁ ଆନ୍ଦୋଳନ । ଏ ଆନ୍ଦୋଳନ ଆଟଲାଣ୍ଟିକଠାରୁ ପ୍ରଶାନ୍ତ ମହାସାଗର ପର୍ଯ୍ୟନ୍ତ, ନିଉ ଇଂଲଣ୍ଡଠାରୁ କାଲିଫର୍ଣ୍ଣିଆ ପର୍ଯ୍ୟନ୍ତ ଏକ୍ସପ୍ରେସ ଗତିରେ ଦୌଡ଼ିବାକୁ ଲାଗିଲା ।"

ମାର୍କସ ଦେଖାଇଛନ୍ତି କିପରି ଆମେରିକାର ବାଲଟିମୋର ସହରରେ ୮ ଘଣ୍ଟା କାମର ଦାବୀ ଉତ୍ଥାପନ କଲାବେଳେ ଆଟଲାଣ୍ଟିକର ଅପର ପାର୍ଶ୍ୱରେ ଜେନେଭାରେ ଗୋଟିଏ ଆନ୍ତର୍ଜାତିକ କଂଗ୍ରେସ ସେହି ଦାବୀ ଉତ୍ଥାପନ କରିଥିଲେ, ସେଥିପାଇଁ ଏକ ଉତ୍ପାଦନ ବ୍ୟବସ୍ଥାରୁ ଜନ୍ମ ଆଟଲାଣ୍ଟିକର ଦୁଇ ପଟର ଶ୍ରମିକଶ୍ରେଣୀ ଏକ ସମୟରେ ଏକ ଦାବୀ— ୮ ଘଣ୍ଟା କାମର ଦାବୀ ଉତ୍ଥାପନ କରୁଥିଲେ । ୨୫ ବର୍ଷ ପରେ ଆମେରିକା ଶ୍ରମିକ ଆନ୍ଦୋଳନର ଏହି ପ୍ରଭାବ ଆନ୍ତର୍ଜାତିକ ଆନ୍ଦୋଳନ ଉପରେ ଆହୁରି ଜୋରରେ ପଡ଼ିଲା ।

## ଆମେରିକାରେ ମଇ ଦିବସର ଜନ୍ମ

୧୮୭୨ରେ ଲଣ୍ଡନରୁ ନ୍ୟୁୟର୍କକୁ 'ପ୍ରଥମ ଆନ୍ତର୍ଜାତିକ'ର ହେଡ଼କ୍ୱାର୍ଟର ଉଠିଯିବା ପରେ ତାହା ସଙ୍ଗଠନ ହିସାବରେ ଲୋପ ପାଇଲା । ଅବଶ୍ୟ ପୁଣି ଥରେ ଦ୍ୱିତୀୟ ଆନ୍ତର୍ଜାତିକ ପାରିସ୍‌ରେ ଗଠିତ ହେଲା ୧୮୮୯ ସାଲରେ । ସେଇ ଦ୍ୱିତୀୟ ଆନ୍ତର୍ଜାତିକରେ ମଇ ପହିଲାକୁ ଶ୍ରମିକମାନଙ୍କର ରାଜନୈତିକ ଦାବୀ— ୮ ଘଣ୍ଟା କାମର ଦାବୀ ଉପରେ ସଂଗ୍ରାମର ଆନ୍ତର୍ଜାତିକ ଦିବସ ରୂପେ ପାଳନ କରିବା ପାଇଁ ନିଷ୍ପତ୍ତି କରାଯାଇଥିଲା ।

୧୮୮୪ ଅକ୍ଟୋବର ୭ ତାରିଖରେ ଆମେରିକାର ଶ୍ରମିକ ସଙ୍ଗଠନମାନଙ୍କରେ କନଭେନସନ ମଇ ଦିବସରେ ଦିନକୁ ୮ ଘଣ୍ଟା କାମର ଦାବୀ ଉତ୍ଥାପନ କରିବା ପାଇଁ ନିଷ୍ପତ୍ତି କରିଥିଲେ । ସେତେବେଳେ ଏ ଶ୍ରମିକ ଅନୁଷ୍ଠାନର ନାମ ଥିଲା "ଫେଡ଼େରେସନ୍ ଅଫ ଅର୍ଗାନାଇଜଡ଼ ଟ୍ରେଡ଼ସ ଏଣ୍ଡ଼ ଲେବର ୟୁନିଅନସ୍ ଅଫ୍ ୟୁନାଇଟେଡ଼ ଷ୍ଟେଟ୍‌ସ ଏଣ୍ଡ଼ କ୍ୟାନାଡ଼ା" । ପରେ ତା' ନାମ ହେଲା 'ଆମେରିକାନ୍ ଫେଡ଼େରେସନ ଅଫ ଲେବର (A. F. of L) ସେ କନଭେନସନରେ ନିମ୍ନଲିଖିତ ପ୍ରସ୍ତାବ ନିଆଗଲା—

"ଫେଡ଼େରେସନ ଅଫ ଅର୍ଗାନାଇଜଡ଼ ଟ୍ରେଡ଼ସ ଏଣ୍ଡ଼ ଲେବର ୟୁନିଅନସ୍ ଅଫ ଦି ୟୁନାଇଟେଡ଼ ଷ୍ଟେଟସ୍ ଏଣ୍ଡ଼ କ୍ୟାନାଡ଼ାର ଏ ସମ୍ମିଳନୀ ନିଷ୍ପତ୍ତି କରୁଛି ଯେ ୧୮୮୬ ମଇ ପହିଲାଠାରୁ ୮ ଘଣ୍ଟା ଗୋଟିଏ ଆଇନାନୁମୋଦିତ ଦିନର କାମ ହିସାବରେ ଧରାଯିବ ଏବଂ ଆମେ ଶ୍ରମିକ ସଙ୍ଗଠନମାନଙ୍କୁ ପରାମର୍ଶ ଦେଉଛୁଁ ଯେ ସେମାନେ ତାଙ୍କର ପରିସର ମଧ୍ୟରେ ପ୍ରସ୍ତାବରେ ଏହି ନିର୍ଦ୍ଦିଷ୍ଟ ହୋଇଥିବା ସମୟ ଭିତରେ ଏ ପ୍ରସ୍ତାବ ସହିତ ଖାପ ଖାଇବା ପରି ସେମାନଙ୍କର ଆଇନ କାନୁନକୁ ପରିଚାଳିତ କରିବେ ।"

ସେତେବେଳେ ଏ ଅନୁଷ୍ଠାନର ସଭ୍ୟ ସଂଖ୍ୟା ଥିଲା ୫୦ ହଜାର । ତେଣୁ ସେମାନେ ନିଜ ଇଚ୍ଛା ଅନୁସାରେ ଦିନକୁ ୮ ଘଣ୍ଟା କାମ ଦାବୀକୁ କାର୍ଯ୍ୟକାରୀ କରି ପାରିନଥିଲେ ନାହିଁ । ସେମାନଙ୍କୁ ଏ ଦିଗରେ ସଂଗ୍ରାମ କରିବାକୁ ପଡ଼ିବ ଏବଂ ଅଧିକାଂଶ ଶ୍ରମିକଙ୍କୁ ଏକଜୁଟ କରିବାକୁ ପଡ଼ିବ ବୋଲି ସେମାନେ ଧରି ନେଇଥିଲେ । ୧୮୮୬ ମସିହା ମଇ ପହିଲା ଦିନ ଏ ଦାବୀ ଉପରେ ଧର୍ମଘଟ କରିବାର ମସୁଧା ହେଲା । ଧର୍ମଘଟର ଡାକରା ଅବଶ୍ୟ ଦିଆଯାଇ ନଥିଲା । କିନ୍ତୁ ଫେଡ଼େରେସନର ପ୍ରସ୍ତାବରେ ଷ୍ଟ୍ରାଇକ ପାଣ୍ଠି ଉଠାଇବା ପାଇଁ ପ୍ରତ୍ୟେକ ୟୁନିଅନକୁ ନିର୍ଦ୍ଦେଶ ଦିଆଯାଇଥିଲା ।

## ମଇ ପହିଲା ଧର୍ମଘଟ ପାଇଁ ପ୍ରସ୍ତୁତି

୧୮୭୭ରେ ରେଲ ଓ ଲୁହାଶିଳ୍ପର ହଜାର ହଜାର ଶ୍ରମିକ ଧର୍ମଘଟ ଆରମ୍ଭ କଲେ । ଏହା ହେଉଛି ଆମେରିକାର ଶ୍ରମିକ ଶ୍ରେଣୀର ପ୍ରଥମ ଦେଶବ୍ୟାପୀ ଧର୍ମଘଟ

ଆନ୍ଦୋଳନ । ଆମେରିକା ସରକାର ଓ ପୁଞ୍ଜିବାଦୀଶ୍ରେଣୀ ଶ୍ରମିକମାନଙ୍କର ଧର୍ମଘଟକୁ ଦବାଇବା ପାଇଁ ଦମନର ସୁଅ ଛୁଟାଇଲେ । ଏମାନଙ୍କର ପାଶବିକ ଆକ୍ରମଣ ଆଗରେ ଧର୍ମଘଟ ବିଫଳ ହେଲା । କିନ୍ତୁ ଆମେରିକାର ଶ୍ରମିକଶ୍ରେଣୀ ନିଜ ଅଭିଜ୍ଞତାରୁ ବୁଝିଲେ ଯେ ପୁଞ୍ଜିବାଦୀ ଓ ସରକାର ଏକ । ପୁଞ୍ଜିବାଦର ସ୍ୱାର୍ଥ ରକ୍ଷାପାଇଁ ସରକାର ଶ୍ରମିକ ଶ୍ରେଣୀକୁ ଦମନ କରୁଛି । ତେଣୁ ସେମାନେ ନିଜର ଶ୍ରେଣୀର ଅବସ୍ଥା ଓ ଭୂମିକାକୁ ଆପଣାର ଅଭିଜ୍ଞତା ଭିତରୁ ଉପଲବ୍ଧି କଲେ । ଧର୍ମଘଟ ବିଫଳ ହେଲେ ମଧ୍ୟ ସେମାନେ ଆହୁରି ରାଜନୈତିକ ଭାବରେ ସଚେତନ ହୋଇ ଉଠିଲେ ।

୧୮୭୫ ମସିହାରେ ପେନସିଲଭେନିଆର କୋଇଲାଖଣି ମାଲିକମାନେ ଶ୍ରମିକମାନଙ୍କର ସଙ୍ଗଠନ ଦମନ କରିବା ପାଇଁ ମଲିମୋଗୁଇସ ପ୍ରଭୃତି ଦଶଜଣ ଲଢୁଆ ଶ୍ରମିକଙ୍କୁ ଫାଶି କାଠରେ ଝୁଲାଇ ଦେଲେ ।

୧୮୮୦ ଓ ୯୦ ଭିତରେ ଆମେରିକାର ଶିଳ୍ପ ବ୍ୟାପକ ଭାବରେ ବଢ଼ି ଉଠିଲା ଏବଂ ଦେଶ ଭିତରେ ବଜାର ବ୍ୟାପିଲା । କିନ୍ତୁ ୧୮୮୪, ୮୫ ବର୍ଷଟା ବଜାର ମାନ୍ଦା ପଡ଼ିଲା । ସେଥିପାଇଁ ଯେଉଁ ଲୋକେ ବେକାର ହେଲେ ସେମାନଙ୍କୁ ଏହା ଫଳରେ କାମ ମିଳିବ ବୋଲି ଆଶା କରି ସେମାନେ ମଧ୍ୟ ଆଠଘଣ୍ଟା କାମ ଦାବୀକୁ ସମର୍ଥନ କଲେ ।

ଆମେରିକାନ ଫେଡ଼େରେସନ ଅଫ ଲେବର ଦେଖିଲେ ଯେ ୮ ଘଣ୍ଟା କାମର ଦାବୀ ଉପରେ ଫେଡ଼େରେସନ ବାହାରେ ଥିବା ଓ 'ନାଇଟସ୍ ଅଫ୍ ଲେବର' (ଆଉ ଗୋଟିଏ ପୁରୁଣା ଶ୍ରମିକ ସଙ୍ଗଠନ) ଭିତରେ ଥିବା ଶ୍ରମିକମାନଙ୍କୁ ମଧ୍ୟ ଗୋଟିଏ ମଞ୍ଚ ଉପରେ ଏକଜୁଟ୍ କରିହେବ । ଏହିପରି ଏକ ମିଳିତ ସାଧାରଣ ସଂଗ୍ରାମ କରିପାରେ ହିଁ ସେମାନଙ୍କର ଦାବୀ ଆଦାୟର ପଥ ସୁଗମ ହେବ ।

୧୮୮୫ରେ ଫେଡ଼େରେସନର କନଭେନସନରେ ଆସନ୍ତା ବର୍ଷ ମଇ ପହିଲା ଦିନ କାରଖାନା ଛାଡ଼ି ଚାଲି ଆସିବା ପାଇଁ ନିଷ୍ପତ୍ତିକୁ ପୁଣି ଥରେ ଗ୍ରହଣ କରାଗଲା । କାଠ କାରିଗର ଓ ସିଗାରେଟ ଶ୍ରମିକ ପ୍ରଭୃତି ସଂଗ୍ରାମ ପାଇଁ ପ୍ରସ୍ତୁତ ହେଲେ । ଏଇ ଆନ୍ଦୋଳନ ଉପରେ ପ୍ରତ୍ୟେକ ୟୁନିଅନର ସଭ୍ୟ ସଂଖ୍ୟା ବଢ଼ିଲା । ନାଇଟ୍ ଅଫ ଲେବର ଖୁବ୍ ବଢ଼ିଗଲା । ଫେଡ଼େରେସନ ଅପେକ୍ଷା ଏହା ବେଶି ଜଣାଶୁଣା । ଏହାର ସଭ୍ୟ ସଂଖ୍ୟା ଦୁଇ ଲକ୍ଷରୁ ସାତଲକ୍ଷ ହେଲା । ନାଇଟ୍ ଅଫ୍ ଲେବର ନେତା ଟେରେନସ ପାଉଡ଼ରଲି ଧର୍ମଘଟ ବିରୁଦ୍ଧରେ ଗୁପ୍ତଭାବରେ ପ୍ରଚାର କରିବାର ଧରା ପଡ଼ିବାରୁ ତାହାର ଲୋକପ୍ରିୟତା କମିଗଲା । ଏହା ଫଳରେ ଫେଡ଼େରେସନର ଲୋକପ୍ରିୟତା ବଢ଼ିଲା । ଚାରିଆଡ଼େ ୮ ଘଣ୍ଟା ଲାଗି ସଂଗ୍ରାମ ପରିଷଦ ଗଢ଼ି ଉଠିଲା । ଏକ ନୂତନ ସଂଗ୍ରାମୀ ମନୋଭାବ ଶ୍ରମିକମାନଙ୍କଠାରେ ଦେଖାଦେଲା । ଅସଙ୍ଗଠିତ ଶ୍ରମିକ ମଧ୍ୟ ଏଥିରେ ଉଦ୍‌ବୁଦ୍ଧ ହେଲେ ।

ଶ୍ରମିକମାନଙ୍କର ସଂଗ୍ରାମ ହେଉଛି ସେମାନଙ୍କର ମନୋଭାବର ପ୍ରକୃତ ମାପ ଥିଲା । ୧୮୮୫-୮୬ରେ ଧର୍ମଘଟର ସଂଖ୍ୟା ବଢ଼ିଲା । ୧୮୮୬ରେ ଧର୍ମଘଟର ସଂଖ୍ୟା ୮୫ ମସିହାର ଦୁଇଗୁଣ ହେଲା । 'ନାଇଟ୍ ଅଫ୍ ଲେବର' ନେତୃତ୍ୱର ଧୋକାବାଜି ସତ୍ତ୍ୱେ ୫ ଲକ୍ଷ ଶ୍ରମିକ ମଇ ଦିବସ ପ୍ରଭୃତି ଧର୍ମଘଟରେ ଭାଗନେଲେ ।

ଧର୍ମଘଟର କେନ୍ଦ୍ର ହେଲା ଚିକାଗୋ ସହର । ଏହାଛଡ଼ା ନ୍ୟୁୟର୍କ, ବାଲଟି-ମୋର, ଓ୍ୱାସିଂଟନ, ମିଲଓ୍ୱାଉକି, ପିଟ୍ସବର୍ଗ ଓ ଡେଟ୍ରଏଟ୍ ପ୍ରଭୃତି ଅନେକ ସହରରେ ଧର୍ମଘଟ ଦେଖାଦେଲା । ଏହାର ବିଶେଷତ୍ୱ ହେଉଛି ଯେ ଏ ଧର୍ମଘଟରେ ଅଦକ୍ଷ ଓ ଅସଂଗଠିତ ଶ୍ରମିକମାନେ ବିଶେଷ ଭାଗ ନେଲେ । ଗୃହଆଡ଼େ ବିଦ୍ରୋହର ବାତ୍ୟା ବହିଲା । ଧର୍ମଘଟର ଜୁଆର ଛୁଟିଲା । ଦେଶ ଭିତରେ ଗୋଟିଏ 'ସାମାଜିକ ଯୁଦ୍ଧ' ଲାଗିଲା ବୋଲି ବୁର୍ଜୁଆ ଲେଖକମାନେ ବର୍ଣ୍ଣନା କଲେ । ମଇ ଦିବସ ଧର୍ମ-ଘଟରେ ଯୋଗ ଦେଇଥିବା ପ୍ରାୟ ଅଧେ ଶ୍ରମିକ ୮ ଘଣ୍ଟା ଦାବୀ ହାସଲ କଲେ ଓ ଆଉ ଅଧିକାଂଶ ଜାଗାରେ କାମର ଘଣ୍ଟା କମିଲା ।

## ଚିକାଗୋର ଧର୍ମଘଟ ଓ 'ହେ ମାର୍କେଟ'

ମଇ ପହିଲା ଦିନ ଚିକାଗୋରେ ସବୁଠାରୁ ଲଢ଼ୁଆ ଧର୍ମଘଟ ହେଲା । ତା'ର କାରଣ ସେଠାରେ ବାମପନ୍ଥୀମାନଙ୍କର ଶକ୍ତି ବେଶି । ଧର୍ମଘଟର କିଛି ପୂର୍ବରୁ ଆଠଘଣ୍ଟା କାମ ଆସୋସିଏସନ୍ ଗଢ଼ା ଯାଇଥିଲା । ଏହା ସମସ୍ତଙ୍କର ଗୋଟିଏ ମିଳିତ ସାମ୍ମୁଖ୍ୟ । ଏଥିରେ ଥିଲେ ଫେଡ଼େରେସନ୍, ନାଇଟ ଅଫ୍ ଲେବର ଓ ଆମେରିକା ଶ୍ରମିକର ପ୍ରଥମ ସୋସାଲିଷ୍ଟ ପାର୍ଟି—ସୋସାଲିଷ୍ଟ ଲେବର ପାର୍ଟି । ମଇ ପହିଲା ପଡ଼ିଲା ସୋମବାର ଦିନ । ରବିବାର ଦିନ କେନ୍ଦ୍ର ଶ୍ରମିକ ୟୁନିଅନ (ବାମପନ୍ଥୀମାନଙ୍କର ସଂଗଠନ) ଗୋଟିଏ ସଭା ଓ ଶୋଭାଯାତ୍ରା କଲେ । ସେଥିରେ ୪୦ ହଜାର ଶ୍ରମିକ ଯୋଗ ଦେଇଥିଲେ । ଆହୁରି ଦୁଇଦିନ ପାଇଁ ଏ ବିକ୍ଷୋଭ ଚାଲିଲା ।

ମଇ ପହିଲା ସମସ୍ତ ଶ୍ରମିକ ପ୍ରାୟ ସାଢ଼େ ତିନିଲକ୍ଷ ନିଜର ହାତ ହତିଆର ରଖି ଧର୍ମଘଟରେ ବାହାରିଲେ । ଆମେରିକାର ଶ୍ରମିକ ଆନ୍ଦୋଳନରେ ଏହା ଏକ ଅଭିନବ ଘଟଣା । ୮ ଘଣ୍ଟା କାମର ଦିନ ଦାବୀ ଉପରେ ସମସ୍ତେ ଏକଜୁଟ ହେଲେ । ୧୮୮୬ ଶ୍ରମିକ ଆନ୍ଦୋଳନର ଇତିହାସରେ ଏହା ଏକ ଗୌରବୋଜ୍ଜ୍ୱଳ ଘଟଣା ।

ଶ୍ରମିକ ଶ୍ରେଣୀର ଶତ୍ରୁ ମାଲିକ ଓ ସରକାର ଚୁପ୍ ହୋଇ ବସିଲେ ନାହିଁ । ଶ୍ରମିକ ଆନ୍ଦୋଳନ ଧ୍ୱଂସ କରିବା ପାଇଁ ସମସ୍ତ ଶକ୍ତି ଖଟାଇଲେ । ମଇ ୩ ତାରିଖରେ ମ୍ୟାକ୍‌କରମିକ ହାରଭେଷ୍ଟର ପ୍ଲାଣ୍ଟର ଧର୍ମଘଟକାରୀ ଶ୍ରମିକମାନଙ୍କ ଉପରେ ପୋଲିସ

ଆକ୍ରମଣ କଲା । ଶାନ୍ତିପୂର୍ଣ୍ଣ ସଭା ଉପରେ ପୋଲିସ ଆକ୍ରମଣ ଫଳରେ ୬ ଜଣ ଶ୍ରମିକ ପ୍ରାଣ ହରାଇଲେ ଏବଂ ଅନେକ ଆହତ ହେଲେ ।

ମଇ ୪ ତାରିଖରେ ତାର ପ୍ରତିବାଦ କରିବାପାଇଁ ଚିକାଗୋର 'ହେ ମାର୍କେଟ ସ୍କୋୟାର'ରେ ସଭା ହେଲା । ସଭା ସରିଲାବେଳକୁ ଜଣେ ଅଜ୍ଞାତ ଲୋକର ବୋମା ଫୋପାଡ଼ିବା ଫଳରେ ୭ ଜଣ ପୋଲିସ ଓ ଚାରିଜଣ ଶ୍ରମିକ ମୃତ୍ୟୁମୁଖରେ ପଡ଼ିଲେ ଏବଂ ବହୁଲୋକ ଆହତ ହେଲେ । ସମବେତ ଜନତା ଉପରେ ପୋଲିସର ନୃଶଂସ ଆକ୍ରମଣ ଚାଲିଲା । ଶ୍ରମିକର ରକ୍ତରେ ହେ ମାର୍କେଟ ସ୍କୋୟାର ଲାଲହୋଇ ଉଠିଲା । ପୋଲିସ ବହୁ ଶ୍ରମିକ ନେତାମାନଙ୍କୁ ଧରିନେଲେ । ସେମାନେ ଅବଶ୍ୟ 'ଆନାର୍କିଷ୍ଟ' ବା ଅରାଜକବାଦୀ ଏବଂ ଆହୁରି ସଠିକଭାବରେ କହିଲେ "ଆନାର୍କୋ-ସିଣ୍ଡିକାଲିଷ୍ଟ ।" ଶ୍ରମିକମାନଙ୍କ ଭିତରେ ଏକ ଆତଙ୍କରାଜ ସୃଷ୍ଟି କରାଗଲା ଏବଂ ଶ୍ରମିକ ଆନ୍ଦୋଳନକୁ ଦମନ କରିବା ପାଇଁ ଅଜବ ମିଛ ଓ ଆତଙ୍କଜନକ ପ୍ରଚାର ଶ୍ରମିକ ନେତାମାନଙ୍କ ବିରୁଦ୍ଧରେ ମିଥ୍ୟା ମକଦ୍ଦମା ରୁଜୁ କରାଗଲା । ସେମାନେ ହେଲେ ଆଲବର୍ଟ ଆର ପାରସନସ୍, ଅଗଷ୍ଟ ସ୍ପାଇଜ, ସାମୁଏଲ ଜେ ଫିଲଡ଼େନ, ମ୍ୟୁଜେନ ସ୍କାଓ୍ୱାବ, ଆଡ଼ଲଫ ଫିସର, ଜର୍ଜ ଏଙ୍ଗେଲସ୍, ଲୁଇଲିଙ୍ଗ ଓ ଓସ୍କାର ନବେ । ବିଚାର ଗୋଟିଏ ପ୍ରହସନ ହେଲା । ପରେ ଜଣା ପଡ଼ିଲା ଯେ ପୁଲିସର ସାକ୍ଷୀଙ୍କୁ ଲାଞ୍ଚ ଦିଆଯାଇଥିଲା । ସେଦିନ ଫିଲଡ଼େନଙ୍କ ଛଡ଼ା ଅନ୍ୟ ସମସ୍ତ ନେତା ବୋମାପଡିବା ପୂର୍ବରୁ ସଭା ଅଞ୍ଚଳ ଛାଡ଼ି ଚାଲିଯାଇଥିଲେ । ବିଚାରରେ ୭ ଜଣଙ୍କୁ ଫାଶୀ ଏବଂ ନବେଙ୍କୁ ୧୫ ବର୍ଷ ଜେଲ ହେଲା ।

୧୮୮୭ ନଭେମ୍ବର ୧୧ ତାରିଖ ଦିନ ଶ୍ରମିକ ନେତା ପାରସନସ୍ ସ୍ପାଇଜ, ଫିସର ଏବଂ ଏଙ୍ଗେଲସଙ୍କୁ ନିର୍ମମଭାବରେ ଫାଶୀ ଦିଆଗଲା ଏବଂ 'ନବେଙ୍କୁ', ୧୫ ବର୍ଷ ଜେଲଦଣ୍ଡ ଦିଆଗଲା । ଜେଲଖାନା ଭିତରେ ନିଭୃତ କୋଠରୀରେ 'ଲିଙ୍ଗ'ଙ୍କୁ ମରି ପଡ଼ିଥିବାର ଦେଖାଗଲା । ପୋଲିସ କହେ ଯେ ଲିଙ୍ଗ ଆତ୍ମହତ୍ୟା କରିଥିଲେ, ଶ୍ରମିକ ଆନ୍ଦୋଳନକୁ ଦମନ କରିବା ପାଇଁ ଏ ନିର୍ମମ ଅତ୍ୟାଚାର ଓ ଆକ୍ରମଣ ଉଦ୍ଦିଷ୍ଟ । ଏଥିରେ ଗଣତନ୍ତ୍ରର ପୂଜାରୀ ବୋଲାଉଥିବା ଆମେରିକାର କୋର୍ଟ ଓ ନ୍ୟାୟ ବ୍ୟବସ୍ଥା ପୁଞ୍ଜିବାଦର ନଗ୍ନ ଦଲାଲ ଓ ଆତତାୟୀପରି କାର୍ଯ୍ୟ କରାଗଲା ।

ଶ୍ରମିକ ନେତାମାନେ ବୀରତ୍ୱପୂର୍ଣ୍ଣ ଭାବରେ ଫାଶିଗୁଣ୍ଡିର ସାମନା କଲେ ।

ପାରସନ ଫାସିଖୁଣ୍ଟରୁ ବଡ଼ ପାଟିରେ କହିଲେ, "ଆମେରିକାର ଜନସାଧାରଣ ! ଲୋକମାନଙ୍କର ପ୍ରତିବାଦର ସ୍ୱର ଉଠାଅ । ଓ ଭଲମାନେ ।

ଷ୍ପାଇଜ ଚିତ୍କାର କରି କହିଲେ, "ତମେ ମୋର ସ୍ୱରକୁ ଆଜି ବନ୍ଦ କରିଦେଇ-ପାର। କିନ୍ତୁ ଦିନ ଆସିବ ଯେତେବେଳେ ଆମର ନୀରବତା ତମେ ଆଜି ଚିପି ଦେଉଥିବା ସ୍ୱରଠାରୁ ବହୁ ଶକ୍ତିଶାଳୀ ହେବ।"

ଚିକାଗୋ ଶ୍ରମିକନେତାମାନଙ୍କର ଫାଶିର ବର୍ଷକ ପରେ ୧୮୮୮ରେ ପୁଣି ଥରେ ଫେଡ଼େରେସନ୍ ଆଠଘଣ୍ଟା କାମର ଦିନ ଉପରେ ଆନ୍ଦୋଳନ କରିବା ପାଇଁ ଠିକ୍ କଲେ। ମଇ ପହିଲାରେ ଧର୍ମଘଟ ଓ ସଭା ଶୋଭାଯାତ୍ରା ଇତ୍ୟାଦି ହେବା ଗୋଟିଏ ମାମୁଲି କଥା ହେଲା। ପୁଣି ଥରେ ସେଇ ମଇ ପହିଲାରେ ୮ ଘଣ୍ଟା କାମର ଦାବୀ ଉଠାଇବା ପାଇଁ ନିଷ୍ପତ୍ତି ହେଲା। ୧୮୯୦ ମଇ ପହିଲା ଦିନ ଦେଶସାରା ଧର୍ମଘଟ ହେବାର କଥା। କିନ୍ତୁ ଫେଡେରେସନ ସାମୁଏଲ ଗୋମ୍ପରସଙ୍କ ନେତୃତ୍ୱରେ ଧର୍ମଘଟ ସଂଗ୍ରାମକୁ ସୀମାବଦ୍ଧ କରିବାକୁ ଲାଗିଲେ।

## ମଇଦିବସ ଆନ୍ତର୍ଜାତିକ ଦିବସ ହେଲା

୧୮୮୯ ଜୁଲାଇ ୧୪ ତାରିଖ ଦିନ ପାରିସ ସହରରେ ବିଭିନ୍ନ ଦେଶର ସୋସାଲିଷ୍ଟ ଆନ୍ଦୋଳନର ପ୍ରତିନିଧିମାନଙ୍କର ବୈଠକରେ 'ଦ୍ୱିତୀୟ ଆନ୍ତର୍ଜାତିକ' ଗଠିତ ହେଲା। ଆମେରିକା ଶ୍ରମିକ ଶ୍ରେଣୀର ଗୌରବପୂର୍ଣ୍ଣ ମଇ ଦିବସ ସଂଗ୍ରାମରେ ଅନୁପ୍ରାଣିତ ହୋଇ ଦ୍ୱିତୀୟ ଆନ୍ତର୍ଜାତିକ ୧୮୯୦ ମସିହା ଠାରୁ ମଇ ପହିଲାକୁ ଆନ୍ତର୍ଜାତିକ ଦିବସରୂପେ ପାଳନ କରିବାକୁ ନିଷ୍ପତ୍ତି କଲେ।

୧୮୯୧ ରେ ୟୁରୋପର ବିଭିନ୍ନ ଦେଶରେ ୮ ଘଣ୍ଟା କାମର ଦାବୀ ଉପରେ ମଇ ଦିବସ ପାଳିତ ହେଲା। ଶୋଷକ ଶ୍ରେଣୀ ଏହାକୁ ଦବାଇବା ପାଇଁ ନାନା ଭାବରେ ଧମକ ଚମକ ଦେଲେ, କିନ୍ତୁ ଏକତ୍ରିତ ଶ୍ରମିକ ତା'ର ବିଜୟ ପଥରେ ଚାଲିଲା।

୧୮୯୧ ରେ ଦ୍ୱିତୀୟ ଆନ୍ତର୍ଜାତିକର ବ୍ରସେଲସ କଂଗ୍ରେସ ଏହାକୁ ଶ୍ରମିକ ଦାବୀ ଦିବସରୂପେ ପାଳନ କରିବା ପାଇଁ ନିଷ୍ପତ୍ତି କଲେ। ଆହୁରି ମଧ୍ୟ ଠିକ୍ ହେଲା ଯେ, ମଇ ପହିଲା ଦିନ ଯେଉଁଠି ସମ୍ଭବ ସେଠି ଧର୍ମଘଟ କରିବାକୁ ହେବ ବା କାମ ବନ୍ଦ କରିବାକୁ ହେବ। ବ୍ରିଟିଶ ଲେବରପନ୍ଥୀମାନେ ଜର୍ମାନ ସୋସାଲ ଡେମୋକ୍ରାଟ-ମାନଙ୍କ ସହିତ ମିଶି ମଇ ଦିବସରେ ଧର୍ମଘଟ ନ କରି ମଇ ପହିଲା ପର ରବିବାର ଦିନ ଏହାକୁ ପାଳନ କରିବା ପାଇଁ ପ୍ରଚାର କଲେ।

## ସଂଗ୍ରାମ ଦିବସ ବନାମ ମଉଜ ମଜଲିସର ଦିନ

ପୃଥିବୀର ଶ୍ରମିକଶ୍ରେଣୀ ମଇ ଦିବସକୁ ପାଳନ କରି ଚାଲିଲେ। କେବଳ ଆମେରିକା ନୁହେଁ, ସମଗ୍ର ବିଶ୍ୱର ଶ୍ରମିକ ସେହିଦିନ ଏକଜୁଟ ହୋଇ ନିଜର ମୌଳିକ ଦାବୀ ଓ ଆଠଘଣ୍ଟା କାମର ଦିନ ପାଇଁ ଆବାଜ ଉଠାଇଲେ। ସେହିଦିନ ବିଶ୍ୱର

ଶ୍ରମିକ ଶ୍ରେଣୀ ନିଜର ଏକତା ଓ ସହତ ପ୍ରତିଷ୍ଠା କରିବା ପାଇଁ ପ୍ରତିବର୍ଷ ଶପଥ ନେଲା । ପ୍ରତ୍ୟେକ ବର୍ଷର ସଂଗ୍ରାମର ଆଲୋଚନା ଓ ନବବର୍ଷ ପାଇଁ କର୍ମଯୋଜନା ବିଶ୍ୱର ଶ୍ରମିକ ଶ୍ରେଣୀକୁ ଏକଜୁଟ କରିବାରେ ଏବଂ ସଂଗ୍ରାମୀ କରିବାରେ ସାହାଯ୍ୟ କଲା । ମଇଦିବସ ହେଲା ଶ୍ରମିକ ଆନ୍ଦୋଳନର ଏକତା ଓ ସଂଗ୍ରାମର ହତିଆର । ସେଦିନ ଶ୍ରମିକଶ୍ରେଣୀ ନିଜର ସମସ୍ତ ବିଭେଦ ନଷ୍ଟ କରି ସ୍ୱୀୟ ଶୋଷଣର ଅତ୍ୟା-ଚାରର ଲୋପ ପାଇଁ ଆନ୍ଦୋଳନରେ ଯୋଗ ଦେଲା । ପ୍ରତିବର୍ଷର ଶ୍ରମିକ ଏକତା ଓ ସଂଗ୍ରାମର ଏ ପର୍ବ ଶୋଷକଶ୍ରେଣୀ ମନରେ ଏକ ଭୟ ଓ ଆତଙ୍କ ସୃଷ୍ଟି କଲା । କେବଳ ଦମନ ଓ ଅତ୍ୟାଚାର ଶ୍ରମିକ ଶ୍ରେଣୀକୁ ଦବାଇବା ପାଇଁ ଯଥେଷ୍ଟ ନୁହେଁ ବୋଲି ଦେଖି ଶୋଷକଶ୍ରେଣୀ ନୂଆ ନୂଆ କୌଶଳ ନେଲେ । ମଇଦିବସର ବିପ୍ଳବୀ ଗୁରୁତ୍ୱକୁ କମାଇ ଶ୍ରମିକର ସଂଗ୍ରାମୀ ଦୃଷ୍ଟିକୋଣକୁ ମଳିନ କରିବା ପାଇଁ ଉଦ୍ୟମ ହେଲା । ଶୋଷକ ଶ୍ରେଣୀର ଶ୍ରେଷ୍ଠ ବନ୍ଧୁ ସୋସାଲ ଡେମୋକ୍ରାଟମାନେ ଏହି ଉଦ୍ୟମରେ ଆଗଭର ହେଲେ । ପ୍ରଶ୍ନ ଉଠିଲା, ମଇଦିବସ ଶ୍ରମିକ ସଂଗ୍ରାମର ଶପଥ ଦିବସ ଓ ପର୍ବ ହେବ କି ମଉଜ ମଜଲିସ ପାଇଁ ଏକ ଛୁଟିରେ ପରିଣତ ହେବ ।

ସୋସାଲ ଡେମୋକ୍ରାଟମାନଙ୍କ ମଧ୍ୟରୁ ସଂସ୍କାରବାଦୀ ଆବାଜ ଉଠାଇଲେ ଯେ ମଇ ଦିବସ ଦିନ ଧର୍ମଘଟ ନ କରି ତା ପର ରବିବାର ଦିନ ସଭା ଓ ଶୋଭା-ଯାତ୍ରା କରିବା ଉଚିତ । ମଇ ଦିବସ ଦିନ ଶ୍ରମିକ ଶ୍ରେଣୀ ମଉଜ ମଜଲିସ କରିବ । ମଇ ଦିବସ ହେବ ଶ୍ରମିକ ଶ୍ରେଣୀର ଏକ ଆନନ୍ଦ ଉତ୍ସବର ଦିନ ।

କିନ୍ତୁ ସେତେବେଳେ ଫ୍ରେଡ଼େରିକ ଏଙ୍ଗେଲସ ଓ ଦ୍ୱିତୀୟ ଆନ୍ତର୍ଜାତିକର ନେତାମାନେ ଏ ସୁବିଧାବାଦୀମାନଙ୍କର ଚ୍ଛଳବାଜି ବିରୁଦ୍ଧରେ ଅବିରାମ ସଂଗ୍ରାମ ଚଳାଇଲେ । ମଇଦିବସର ଆରମ୍ଭ ଶ୍ରମିକର ମୌଳିକ ଦାବି ପାଇଁ—ଶ୍ରମିକ ଉପରୁ ଶୋଷଣର କବ୍‌ଜାକୁ କୋହଲ କରିବା ପାଇଁ । ମଇ ଦିବସ ଶ୍ରମିକର ରକ୍ତରେ ରଞ୍ଜିତ ହୋଇଛି ଏବଂ ସେହି ଦିନଠୁ ଶ୍ରମିକ ଏହାକୁ ନିଜର ଦାବି ହାସଲ ଦିବାଶେ ଗୋଟିଏ ସଂଗ୍ରାମର ଦିନ ବୋଲି ପାଳନ କରିଛି । ପ୍ରତିବର୍ଷ ମଇ ଦିବସ ଶ୍ରମିକ ଶ୍ରେଣୀକୁ ଚେତାବନୀ ଦେଇଛି । ପ୍ରତିବର୍ଷ ପୁଞ୍ଜିବାଦୀ ଶୋଷଣର ସମସ୍ତ ଶୃଙ୍ଖଳକୁ ଛିଡ଼ାଇ ନିଜର ମୁକ୍ତ ଓ ସ୍ୱାଧୀନ ଗଣତାନ୍ତ୍ରିକ ସମାଜ ପ୍ରତି । ପାଇଁ ଶ୍ରମିକ ଶ୍ରେଣୀକୁ ମନେ ପକାଇ ଦେଇଛି । ପ୍ରତିବର୍ଷ ମଇ ଦିବସ ଶ୍ରମିକ ଶ୍ରେଣୀକୁ ଏକଜୁଟ କରିଛି ଏବଂ ବିଶ୍ୱ ପୁଞ୍ଜିବାଦ ବିରୁଦ୍ଧରେ ପୃଥିବୀର ସବୁ ଦେଶରେ ଓ ସବୁ ସମୟରେ ଶ୍ରମିକ-ମାନଙ୍କୁ ଅଗ୍ରଗତି କରିବା ପାଇଁ ପଥ ଦେଖାଇଛି ।

ମଇ ଦିବସରେ ସାରା ପୃଥିବୀର ଶ୍ରମିକମାନଙ୍କର ଏକ ସମୟରେ ସଭା ଓ ଶୋଭାଯାତ୍ରା ବିଶ୍ୱର ଶ୍ରମିକ ଶ୍ରେଣୀର ବିପ୍ଳବୀ ମନୋବୃତ୍ତିକୁ ଶକ୍ତିଶାଳୀ କରିଛି ଏବଂ ସେଥିପାଇଁ ପ୍ରତିବର୍ଷ ନୂଆ ନୂଆ ଶ୍ରମିକ ମଇ ଦିବସ ସମାବେଶରେ ଯୋଗଦେଉଛନ୍ତି ।

ମଇ ଦିବସର ତାତ୍ପର୍ଯ୍ୟ ଉପରେ ଆଧୁନିକ ସାମ୍ୟବାଦର ପିତା ଏଙ୍ଗେଲସ ୧୮୯୦ ମସିହା ମଇ ପହିଲା ଦିନ 'କମ୍ୟୁନିଷ୍ଟ ମେନିଫେଷ୍ଟୋ'ର ୪ର୍ଥ ଜର୍ମାନ ସଂସ୍କରଣର ମୁଖବନ୍ଧରେ ଲେଖିଛନ୍ତି—

"ମୁଁ ଯେତେବେଳେ ଏଇ କେତେ ଧାଡ଼ି ବସି ଲେଖୁଛି, ସେତେବେଳେ ୟୁରୋପ ଓ ଆମେରିକାର ସର୍ବହରା ଶ୍ରେଣୀ ନିଜର ଶକ୍ତିର ପ୍ରଦର୍ଶନୀ ଦେଖୁଛି । ପ୍ରଥମ ଥର ପାଇଁ ଏହା ଗୋଟିଏ ପତାକା ତଳେ ଗୋଟିଏ ନିଗଦ ଲକ୍ଷ୍ୟ—ଦିନକୁ ୮ଘଣ୍ଟା କାମର ଆଇନଗତ ଅଧିକାର ହାସଲ ଦିଗରେ ଗୋଟିଏ ସୈନ୍ୟବାହିନୀ ପରି ନିଜକୁ ସଂଗଠିତ କରୁଛି । ଆମେ ଆଜି ଯେଉଁ ଦୃଶ୍ୟ ଦେଖୁଛୁ ତାହା ପ୍ରତ୍ୟେକ ଦେଶର ପୁଞ୍ଜିପତି ଓ ଜମିଦାରମାନଙ୍କୁ ଚେତେଇ ଦେବ ଯେ, ଆଜିହିଁ ପ୍ରକୃତରେ ବିଶ୍ୱର ସମସ୍ତ ଦେଶର ସର୍ବହରା ଏକ ହୋଇଛନ୍ତି । ମାର୍କସ ତାଙ୍କ ନିଜ ଆଖିରେ ଏ ଦୃଶ୍ୟ ଦେଖିବା ପାଇଁ ଆଜି ଥାଆନ୍ତେ କି !"

ଏଙ୍ଗେଲସ ମଇ ଦିବସର ବୈପ୍ଳବିକ ତାତ୍ପର୍ଯ୍ୟ ଓ ପରମ୍ପରାକୁ ରକ୍ଷା କରିବା ପାଇଁ ନିଜେ ଅଣ୍ଟା ଭିଡ଼ି ବାହାରିଥିଲେ । ସୁବିଧାବାଦୀ ସୋସାଲ ଡେମୋକ୍ରାଟମାନଙ୍କ ବିରୁଦ୍ଧରେ ଅବିରାମ ସଂଗ୍ରାମ ଚଳାଇଥିଲେ । ତାଙ୍କର ଉପସ୍ଥିତିରେ ଦ୍ୱିତୀୟ ଆନ୍ତ-ର୍ଜାତିକର ୧୮୯୩ ଖ୍ରୀଷ୍ଟାବ୍ଦରେ ଜୁରିଚଠାରେ କଂଗ୍ରେସ ବସିଲା । ସେଠାରେ ମଇ ଦିବସ ତାତ୍ପର୍ଯ୍ୟ ଉପରେ ବହୁ ଆଲୋଚନା ହେଲା । ଶେଷରେ କଂଗ୍ରେସ ପୂର୍ବ ବର୍ଷର ମଇ ଦିବସର ପ୍ରସ୍ତାବ ସହିତ ନିମ୍ନଲିଖିତ ଅଂଶ ଯୋଗକଲେ ।

"ମଇ ପହିଲାରେ ୮ ଘଣ୍ଟା କାମର ଦିନ ପାଇଁ ସଭା ଓ ଶୋଭାଯାତ୍ରା ହେବା ସଙ୍ଗେ ସଙ୍ଗେ ଏହା ଶ୍ରମିକ ଶ୍ରେଣୀର ଦୃଢ଼ ଇଚ୍ଛା ପ୍ରକାଶର ଏକ ପ୍ରଦର୍ଶନୀ ରୂପରେ ପରିଚାଳିତ ହେବ । ଏହି ଦୃଢ଼ ଇଚ୍ଛା ଯୋଗୁଁ ଶ୍ରମିକଶ୍ରେଣୀ ସାମାଜିକ ପରିବର୍ତ୍ତନ ଜରିଆରେ ସମସ୍ତ ଶ୍ରେଣୀ ପାର୍ଥକ୍ୟକୁ ଲୋପ କରିବ ଏବଂ ଏହିପରି ଭାବରେ ଆନ୍ତର୍ଜାତିକ ଶାନ୍ତି ଓ ସମସ୍ତ ଜାତିମାନଙ୍କର ଶାନ୍ତି ପ୍ରତିଷ୍ଠା ଦିଗରେ ଏକମାତ୍ର ରାସ୍ତାରେ ପରିଚାଳିତ ହେବ ।"

ସୁବିଧାବାଦୀ ସୋସାଲ ଡେମୋକ୍ରାଟମାନଙ୍କର ଚେଷ୍ଟା ପଣ୍ଡ ହେଲା । ଏଙ୍ଗେଲସଙ୍କ ନେତୃତ୍ୱରେ ଜୁରିଚ କଂଗ୍ରେସ ମଇ ଦିବସର ତାତ୍ପର୍ଯ୍ୟରେ ପୁଞ୍ଜିବାଦ ଧ୍ୱଂସ କରି ଶ୍ରେଣୀ ବିହୀନ ସମାଜ ପ୍ରତିଷ୍ଠା ଲାଗି ଓ ଚିରଦିନ ପାଇଁ ମଜୁରିର ଦାସତ୍ୱ ଲୋପ ପାଇଁ ଡାକରା ଦେଲେ । ମଇ ଦିବସ ବିପ୍ଳବୀ ଚେତାବନୀର ଦିବସ ହୋଇ ରହିଲା । କିନ୍ତୁ ସୁବିଧାବାଦୀମାନେ କଂଗ୍ରେସର ଏ ନିର୍ଦ୍ଦେଶ ସତ୍ତ୍ୱେ ନିଜର ପନ୍ଥା ଅନୁସରଣ କରିବାକୁ ବସିଲେ । ମଇ ଦିବସକୁ ପୁଣି ଥରେ କେବଳ ଛୁଟି ଦିନ ହିସାବରେ ପାଳନ କରିବା ପାଇଁ ଚେଷ୍ଟା କଲେ । କିନ୍ତୁ ଏ ଚେଷ୍ଟା ପଣ୍ଡ ହେଲା । ଦ୍ୱିତୀୟ ଆନ୍ତର୍ଜାତିକର ସୁବିଧାବାଦୀ ସୋସାଲ ଡେମୋକ୍ରାଟିକ ନେତୃତ୍ୱ ଜନ-ସାଧାରଣଙ୍କଠାରୁ ଅଲଗା ହେବାକୁ ଲାଗିଲା ।

ସୁବିଧାବାଦୀମାନଙ୍କର ଏ ଚେଷ୍ଟା ବିରୁଦ୍ଧରେ ଶ୍ରମିକଶ୍ରେଣୀ ଅବିରାମ ଅଭିଯାନ ଚଳାଇଲେ । ୧୯୦୦ ମସିହାରେ ଦ୍ୱିତୀୟ ଆନ୍ତର୍ଜାତିକର ପାରିସ କଂଗ୍ରେସ ମଇ ଦିବସର ତାତ୍ପର୍ଯ୍ୟକୁ ଆହୁରି ସ୍ପଷ୍ଟ କଲେ । ସେଠାରେ ନିଷ୍ପତ୍ତି ହେଲା ଯେ ମଇ ଦିବସର ଆନ୍ଦୋଳନକୁ ଆହୁରି ତୀବ୍ର ଓ ଶକ୍ତିଶାଳୀ କରିବା ପାଇଁ ସେଦିନ ଶ୍ରମିକ-ମାନେ କାମ ବନ୍ଦ କରିବେ । ପ୍ରତିବର୍ଷ ମଇ ଦିବସ ବଢ଼ି ଚାଲିଲା ଏବଂ ଶ୍ରମିକଶ୍ରେଣୀର ଏକଜୁଟିତ ଶକ୍ତିର ପରାକାଷ୍ଠା ଦେଖାଇଲା । ସେହି ଦିନଠାରୁ ମଇ ଦିବସ ହେଲା ଏକ ରକ୍ତ ଦିବସ ।

ମହାନ୍ ଲେନିନ୍ ମଇ ଦିବସକୁ ଗୋଟିଏ ବିପ୍ଳବ ଦିବସ ହିସାବରେ ପାଳନ କରିବା ପାଇଁ ସୁବିଧାବାଦୀମାନଙ୍କ ବିରୁଦ୍ଧରେ ତୀବ୍ର ସଂଗ୍ରାମ କରିଥିଲେ । ୧୮୯୬ ଖ୍ରୀଷ୍ଟାବ୍ଦରେ ଲେନିନ ଜେଲରେ ଥିବାବେଳେ ସେଣ୍ଟପିଟରସବର୍ଗର ଶ୍ରମିକ ଶ୍ରେଣୀର ମୁକ୍ତି ପାଇଁ ୟୁନିଅନ ଅଫ୍ ଷ୍ଟ୍ରଗଲର ମଇ ଦିବସ ଉପଲକ୍ଷେ ଗୋଟିଏ ପ୍ରଚାରପତ୍ର ଲେଖିଥିଲେ । ସେ ପ୍ରଚାରପତ୍ରଟି ଜେଲ ଭିତରୁ ଗୁପ୍ତ ଭାବରେ ବାହାରକୁ ଆସିଲା ଏବଂ ୨,୦୦୦ ସାଇକ୍ଲୋଷ୍ଟାଇଲ କପି କରା ହୋଇ ୪୦ଟି କାରଖାନାରେ ବଣ୍ଟା ଯାଇଥିଲା ।

ମାଲିକମାନେ ଶ୍ରମିକମାନଙ୍କୁ କିପରି ଶୋଷଣ କରୁଛନ୍ତି ଏବଂ ଯେଉଁ ଶ୍ରମିକ ନିଜର ଅବସ୍ଥାର ଉନ୍ନତି ପାଇଁ କହିଲା ତାକୁ ସରକାର କିପରି ଦମନ ଓ ଆକ୍ରମଣ କରୁଛନ୍ତି ତାହା ପ୍ରଚାରପତ୍ରରେ ବର୍ଣ୍ଣନା କଲାପରେ ମଇ ଦିବସର ତାତ୍ପର୍ଯ୍ୟ ବିଷୟରେ ଲେନିନ ଲେଖିଛନ୍ତି—

"ଫ୍ରାନ୍ସ, ଇଂଲଣ୍ଡ, ଜର୍ମାନୀ ଏବଂ ଅନ୍ୟାନ୍ୟ ଦେଶରେ ଯେଉଁଠି ଶ୍ରମିକ-ମାନେ ଶକ୍ତିଶାଳୀ ମିଳିତ ୟୁନିଅନରେ ସଂଗଠିତ ହୋଇଛନ୍ତି ଏବଂ କେତେକ ଦାବୀ ହାସଲ କରିଛନ୍ତି, ସେଠାରେ ସେମାନେ ଏପ୍ରିଲ ୧୯ ତାରିଖ ଦିନ (ମଇ ପହିଲା, କାରଣ ଜାର ଅମଳର ରୁଷ ଦେଶର କ୍ୟାଲେଣ୍ଡର ଅନ୍ୟ ଦେଶର କ୍ୟାଲେଣ୍ଡର-ଠାରୁ ୧୨ ଦିନ ପଛରେ ଥିଲା) ଶ୍ରମିକଶ୍ରେଣୀର ସାଧାରଣ ଛୁଟି ଦିନ ହିସାବରେ ପାଳନ କଲେ । ସେମାନେ ନିଷ୍ପ୍ରାଣ ଜଡ଼ କାରଖାନାଗୁଡ଼ିକ ପଛରେ ପକାଇ ସଙ୍ଗୀତର ତାଳ ସହିତ ତାଳ ପକାଇ ପତାକା ଧରି ସହରର ପ୍ରଧାନ ରାସ୍ତାରେ ଶୋଭାଯାତ୍ରାରେ ଚାଲିଲେ ଏବଂ ମାଲିକ ଶ୍ରେଣୀକୁ ନିଜର ବର୍ଦ୍ଧିଷ୍ଣୁ ଶକ୍ତିର ନମୁନା ଦେଖାଇଲେ । ସେମାନେ ବିରାଟ ଜନସଭାରେ ଯୋଗ ଦିଅନ୍ତି ଏବଂ ଅତୀତର ବିଜୟ ଓ ଭବିଷ୍ୟତର ସଂଗ୍ରାମର କାର୍ଯ୍ୟକ୍ରମ ଉପରେ ବକ୍ତୃତା ଶୁଣିବାକୁ ବସନ୍ତି । ଧର୍ମଘଟ ଭୟରେ ମାଲିକମାନେ ସେ ଦିନର ଅନୁପସ୍ଥିତି ପାଇଁ ଶ୍ରମିକଙ୍କୁ ଜୋରିମାନା କରିବାକୁ ସାହସ କରନ୍ତି ନାହିଁ । ଏ ଦିନ ଶ୍ରମିକମାନେ ନିଜର ପ୍ରଧାନ ଦାବୀ—୮

ଘଣ୍ଟା କାମ, ୮ ଘଣ୍ଟା ବିଶ୍ରାମ ଓ ୮ ଘଣ୍ଟା ଖେଳାବୁଲା କଥା ମାଲିକମାନଙ୍କୁ ଚେତାଇ ଦେଇଥିଲେ । ତାଙ୍କ ଦେଶର ଶ୍ରମିକମାନେ ବର୍ତ୍ତମାନ ତାହାହିଁ ଦାବୀ କରୁଛନ୍ତି ।

ରୁଷର ବିପ୍ଳବୀ ଆନ୍ଦୋଳନ ମଇ ଦିବସକୁ ଶ୍ରମିକଶ୍ରେଣୀର ଏକ ବିରାଟ ସୁଯୋଗ ହିସବରେ ବ୍ୟବହାର କରିଥିଲେ । ୧୯୦୦ ମସିହା ନଭେମ୍ବର ମାସରେ ଲେନିନ୍ ଖାରକୋଭରେ ମଇ ଦିବସ ପୁସ୍ତିକାରେ ଲେଖିଥିଲେ—

"ଆଉ ଛ ମାସ ପରେ ରୁଷର ଶ୍ରମିକମାନେ ନୂତନ ଶତାବ୍ଦୀର ପ୍ରଥମ ବର୍ଷରେ ମଇ ଦିବସ ପାଳନ କରିବେ । ଆଜି ସମୟ ଆସିଛି ଯେତେବେଳେ ଆମେ ସେ ଦିନକୁ ପାଳନ କରିବା ପାଇଁ କାମ ଆରମ୍ଭ କରିଦେବା । ଯେତେ ବେଶି ଜାଗାରେ ପାଳନ କରିବା ସମ୍ଭବ ତାହା କରିବା ଉଚିତ । ଯେତେ ବଡ଼ ଆକାରରେ ହୁଏ ତା କରିବା । କେବଳ ଯେ ବେଶି ଲୋକ ଏଥିରେ ଯୋଗଦେବେ ତା ନୁହେଁ, ଏହା ମଧ୍ୟ ଶ୍ରେଣୀ ଚେତନା ଦୃଷ୍ଟିରୁ ସଙ୍ଗଠନ ଓ ରୁଷର ଜନସାଧାରଣଙ୍କର ରାଜନୈତିକ ମୁକ୍ତି ପାଇଁ ଓ ସାମ୍ୟବାଦ ପ୍ରତିଷ୍ଠା ପାଇଁ ଖୋଲା ସଂଗ୍ରାମ ଚଳାଇବା ଓ ଶ୍ରେଣୀ ବିକାଶ ପାଇଁ ଅଦମ୍ୟ ଆନ୍ଦୋଳନର ଯେଉଁ ସାଙ୍ଗଠନିକ ରୂପ ପ୍ରକାଶ କରିବ ସେହି ଦୃଷ୍ଟିରୁ ବଡ଼ ହେବା ଦରକାର ।"

୬ ମାସ ପୂର୍ବରୁ ଲେନିନ ମଇ ଦିବସ ପାଳନ ପାଇଁ ବ୍ୟବସ୍ଥା କରୁଥିଲେ । ମଇ ଦିବସର ଗୁରୁତ୍ୱହିଁ ସେଥିରୁ ବୁଝାପଡ଼େ । ସେ ବୁଝୁଥିଲେ ଯେ ମଇ ଦିବସ ରୁଷର ଜନସାଧାରଣଙ୍କର ରାଜନୈତିକ ମୁକ୍ତି ପାଇଁ ଅଦମ୍ୟ ଆନ୍ଦୋଳନ ସୃଷ୍ଟି କରିବ ଏବଂ ସାମ୍ୟବାଦ ପ୍ରତିଷ୍ଠା ପାଇଁ ଖୋଲା ସଂଗ୍ରାମ ସକାଶେ ସର୍ବହରା ଶ୍ରେଣୀର ବିକାଶ ଦିଗରେ ସାହାଯ୍ୟ କରିବ । ତେଣୁ ମଇ ଦିବସ କେବଳ ସର୍ବହରା ଶ୍ରେଣୀର ସାମ୍ୟବାଦ ପ୍ରତିଷ୍ଠା ପାଇଁ ଯେ ଏକ ଅସ୍ତ୍ର ତା ନୁହେଁ, ଦେଶର ସ୍ୱାଧୀନତା ପାଇଁ ବ୍ୟାପକ ଜନସାଧାରଣଙ୍କ ହାତରେ ଏକ ହତିଆର ।

ମଇ ଦିବସକୁ କପରି ଗୋଟିଏ ବିରାଟ ରାଜନୈତିକ ସମାବେଶରେ ପରିଣତ କରାଯାଇପାରେ ତାହା ମଧ୍ୟ ଲେନିନ୍ ଦେଖାଇଛନ୍ତି । ୧୯୦୦ ମସିହାରେ ଖାରକୋଭର ମଇ ଦିବସ ସମାବେଶକୁ ଏକ ମହାନ ଘଟଣା ବୋଲି ବର୍ଣ୍ଣନା କରି କମ୍ରେଡ଼ ଲେନିନ ଲେଖିଛନ୍ତି—

"ଧର୍ମଘଟରେ ଶ୍ରମିକ ସାଧାରଣଙ୍କ ଯୋଗଦାନ, ରାସ୍ତାରେ ବିରାଟ ସାଧାରଣ ସଭା, ଲାଲଝଣ୍ଡାର ଉତ୍ତୋଳନ, ପତ୍ରରପତ୍ରରେ ଦାବୀ ପେଶ କରିବା ଏବଂ ଆଠ ଘଣ୍ଟା କାମର ଦିନ ଓ ରାଜନୈତିକ ସ୍ୱାଧୀନତାର ଦାବୀର ବୈପ୍ଳବିକ ଚରିତ୍ର ହେଉଛି ରାଜନୈତିକ ସମାବେଶରେ ରୂପରେଖ । ଖାରକୋଭର ମଇ ଦିବସ ଦାବୀରେ ଦିନକୁ ଆଠ ଘଣ୍ଟା କାମର ଦାବୀ ସହିତ ଅନ୍ୟାନ୍ୟ ଶ୍ରେଷ୍ଠ ଶ୍ରେଷ୍ଠ ଦାବୀ ଯୋଡ଼ିବା

ଦ୍ୱାରା ମଇ ଦିବସର ରାଜନୈତିକ ରୂପକୁ ସୃଷ୍ଟି କରାଗଲା ବୋଲି ଲେନିନ ଘୋଷଣା କରିଥିଲେ । ଲେନିନ ଲେଖିଥିଲେ :

"ଏହିସବୁ ଦାବୀ ଭିତରୁ ପ୍ରଥମଟି (୮ ଘଣ୍ଟା କାମର ଦିନ) ହେଉଛି ସର୍ବହରା ଶ୍ରେଣୀର ସାଧାରଣ ଦାବୀ ଏବଂ ପ୍ରତ୍ୟେକ ଦେଶରେ ଏହି ଦାବୀ ସର୍ବହରାମାନେ ରଖିଛନ୍ତି । ଏହି ଦାବୀ ପେଶ କରିବା ଫଳରେ ଖାରକୋଭର ଆଗୁଆ ଶ୍ରମିକଶ୍ରେଣୀ ଆନ୍ତର୍ଜାତିକ ଶ୍ରମିକ ଆନ୍ଦୋଳନ ସହିତ ସେମାନଙ୍କର ଏକତା ଅନୁଭବ କରୁଛନ୍ତି । କେବଳ ଏହି କାରଣରୁ ଏପରି ଏକ ଦାବୀ ସହିତ ଅନ୍ୟାନ୍ୟ ଗୌଣ ଗୌଣ ଦାବୀ ଯଥା—ଫୋରମ୍ୟାନ ଦ୍ୱାରା ଭଲ ବ୍ୟବହାର, ଶତକରା ୧୦ ମଜୁରୀ ବୃଦ୍ଧି ଇତ୍ୟାଦି ଦେବା ଉଚିତ ନଥିଲା । ଆଠଘଣ୍ଟା କାମର ଦିନ ହେଉଛି ସର୍ବହରାର ଦାବୀ । ଏହା କେବଳ କେତେ ଜଣ ବ୍ୟକ୍ତିବିଶେଷ ମାଲିକଙ୍କୁ ଦିଆଯାଉ ନାହିଁ । ବର୍ତ୍ତମାନର ସମସ୍ତ ସାମାଜିକ ଓ ରାଜନୈତିକ ସମାଜ ବ୍ୟବସ୍ଥାର ପ୍ରତିନିଧି ସରକାର ପାଖରେ ଏବଂ ସମସ୍ତ ଉତ୍ପାଦନ ଯନ୍ତ୍ରର ମାଲିକ ପୁଞ୍ଜିପତି ଶ୍ରେଣୀ ପାଖରେ ଏହି ଦାବୀ କରାଯାଉଛି ।"

ସେଥିପାଇଁ ମଇ ଦିବସ ଏକ ମହାନ ଦିବସ ଏବଂ ଜାତୀୟ ସ୍ୱାଧୀନତା ଓ ସର୍ବହରା ଶ୍ରେଣୀର ସାମ୍ୟବାଦ ପ୍ରତିଷ୍ଠା ପାଇଁ ଏହା ଚେତାବନୀର ଦିବସ । ଏହା ମଉଜ ମଜଲିସ ପାଇଁ ଏକ ଛୁଟିର ଦିନ ନୁହେଁ ।

ମଇ ଦିବସର ଦାବୀ କେବଳ ଆଠଘଣ୍ଟା କାମର ଦିନରେ ସୀମାବଦ୍ଧ ରହିଲା ନାହିଁ । ଏକ ମୌଳିକ ଦାବୀ ସହିତ ଆହୁରି କେତେକ ଦାବୀ ଯୋଡ଼ାଗଲା । ସେ ଗୁଡ଼ିକ ହେଉଛି "ଆନ୍ତର୍ଜାତିକ ଶ୍ରମିକଶ୍ରେଣୀର ଏକତା, ସାବାଳକ ଭୋଟ ପ୍ରଥା, ଔପନିବେଶିକ ଅତ୍ୟାଚାର ଏବଂ ସାମ୍ରାଜ୍ୟବାଦୀ ଯୁଦ୍ଧର ବିରୋଧ, ରାସ୍ତାରେ ଚଳାଚଳ କରିବାର ଅଧିକାର, ରାଜନୈତିକ ବନ୍ଦୀମାନଙ୍କର ମୁକ୍ତି ଏବଂ ଶ୍ରମିକଶ୍ରେଣୀର ରାଜନୈତିକ ଓ ଅର୍ଥନୈତିକ ସଙ୍ଗଠନ କରିବାର ଅଧିକାର ଇତ୍ୟାଦି ।"

୧୯୦୪ ମସିହାରେ ଆମଷ୍ଟାରଡାମ୍ କଂଗ୍ରେସର ଅନ୍ତର୍ଜାତିକ ନିଷ୍ପତ୍ତି କଲେ ଯେ ମଇ ଦିବସରେ ସମସ୍ତ ଶ୍ରମିକଶ୍ରେଣୀର ପାର୍ଟିମାନେ ମଇ ଦିବସର ସମାବେଶ ସହିତ ସେ ଦିନ କାମ ବନ୍ଦ କରିବେ । ମଇ ଦିବସ ଏକ ବିପ୍ଳବୀ ଦିବସ ହିସାବରେ ଆଗେଇ ଚାଲିଲା । ୧୯୧୨ ମସିହା ଏପ୍ରିଲରେ ରୁଷିଆର ଲେନା ସୁନାଖଣିର ଶ୍ରମିକମାନଙ୍କ ହତ୍ୟା ପରେ ପରେ ଯେଉଁ ମଇ ଦିବସର ଆନ୍ଦୋଳନ ଦେଖାଦେଲା, ତାହା ରୁଷ ବିପ୍ଳବର ଏକ ଯୁଗାନ୍ତକାରୀ ଘଟଣା । ଏହା ଉପରେ ଲେନିନ ଲେଖିଛନ୍ତି :

"ମାଗ୍ର ଚୁକ୍ତିଆରେ ବସ୍ରାଟ ମଇ ଦିବସ ଧର୍ମଘଟ ଏବଂ ଏ ସମ୍ପର୍କରେ ବିସ୍ତାର ସଭା ଓ ଶୋଭାଯାତ୍ରା, ଶ୍ରମିକଶ୍ରେଣୀ ପ୍ରତି ବିପ୍ଳବୀ ଦକ୍ଷତା ପ୍ରଭୃତି ସ୍ପଷ୍ଟ-ଭାବରେ ଦେଖାଏ ଯେ ରୁଷ ପୁଣି ଥରେ ଜାଗ୍ରତ ବୈପ୍ଳବିକ ଅବସ୍ଥାରେ ପଦାର୍ପଣ କଲା ।"

କାମର ସମୟକୁ କମାଇବା ପାଇଁ ଏବଂ ବିଶେଷତଃ ବର୍ତ୍ତମାନର ବୈଜ୍ଞାନିକ ଅଗ୍ରଗତି ଯୋଗୁ ଆନ୍ଦୋଳନ ସାରା ପୃଥିବୀରେ ଆଗେଇ ଚାଲିଛି । ୧୯୫୭ ଅକ୍ଟୋବର ମାସରେ ବିଶ୍ୱ ଟ୍ରେଡ୍ ୟୁନିଅନ ଫେଡେରେସନର ୪ର୍ଥ କଂଗ୍ରେସରେ ଲିପ୍‌ଜିଗ୍‌ରେ ସାଧାରଣ ସମ୍ପାଦକ ଲୁଇ ସାଇୟାଁ ତାଙ୍କ ରିପୋର୍ଟରେ କହିଥିଲେ, "ମଜୁରି କମ ନକରି କାମର ସମୟ କମ କରିବା ପାଇଁ ଦାବୀ ଆଜି ବିଶ୍ୱ ଶ୍ରମିକଶ୍ରେଣୀର ଏକ ମୌଳିକ ଦାବୀ । ସେମାନଙ୍କର ଅବସ୍ଥାର ଉନ୍ନତି ପାଇଁ ଏବଂ ସାମାଜିକ ପ୍ରଗତି ପାଇଁ ଏହା ଏକ ଅତ୍ୟାବଶ୍ୟକୀୟ ଉପାଦାନ ହିସାବରେ ଶ୍ରମିକମାନେ ଏହାକୁ ଦେଖୁଛନ୍ତି ।"

"ଗତ ଶତାବ୍ଦୀର ଶେଷଭାଗରେ ଏବଂ ଏହି ଶତାବ୍ଦୀର ପ୍ରଥମ ଭାଗରେ ୟୁରୋପୀୟ ଦେଶମାନଙ୍କରେ ୮ ଘଣ୍ଟା କାମର ସମୟ ଯେପରି ଗୁରୁତ୍ୱପୂର୍ଣ୍ଣ ଥିଲା, ଆଜି ଅଳ୍ପ ବିକାଶିତ ଦେଶମାନଙ୍କପାଇଁ ସେହି ଦାବୀ ଠିକ ସେହିପରି ଗୁରୁତ୍ୱପୂର୍ଣ୍ଣ । "ସେ ପୁଣି କହିଲେ "ପୁଞ୍ଜିବାଦ ଦେଶମାନଙ୍କରେ ବେକାରି ସମ୍ଭାବନାକୁ ଦୂର କରିବାପାଇଁ ଏବଂ ଅଟୋମେସନ ଦ୍ୱାରା ଅଧିକ ଉତ୍ପାଦନତା ଜନିତ ଦୈହିକ ଓ ସ୍ନାୟୁ ସମ୍ପର୍କୀୟ ଦୁର୍ବଳତାକୁ ପ୍ରତିରୋଧ ପାଇଁ ସାପ୍ତାହିକ କାମର ସମୟକୁ କମାଇବା ଅତି ଆବଶ୍ୟକ ।"

(ତିନି)

# ଭାରତରେ ମଇ ଦିବସ

ଭାରତରେ ମଇ ଦିବସ ବହୁ ପରେ ଆରମ୍ଭ ହୋଇଛି । ୧୯୨୦ ମସିହାରେ ଏଆଇଟିୟୁସି ଗଠିତ ହେଲାପରେ ମଇ ଦିବସ ପାଳନ ପାଇଁ ଆନ୍ଦୋଳନ ଆରମ୍ଭ ହୁଏ । ୧୯୨୭ ମସିହାଠାରୁ ମଇ ଦିବସ ପାଳିତ ହେଲା ।

ବ୍ରିଟିଶ ସାମ୍ରାଜ୍ୟବାଦର ଶାସନ ଅମଳରେ ଏହା ପାଳନ କରିବା ଅତି କଷ୍ଟସାଧ୍ୟ ଥିଲା । ଅବଶ୍ୟ ବର୍ତ୍ତମାନ ଏହା ଏକ ସାଧାରଣ ଘଟଣାରେ ପରିଣତ ହୋଇଛି । ବହୁ ଶିଳ୍ପରେ ଏହାକୁ ଛୁଟି ଦିବସ ରୂପେ ଗ୍ରହଣ କରାଯାଇଛି ।

ଭାରତରେ ମଇ ଦିବସର ଇତିହାସ ବହୁ ଝଡ଼ଝଞ୍ଜା ଭିତର ଦେଇ ଗତି କରିଛି ।

ଭାରତରେ ବହୁ ଡେରିରେ ଶ୍ରମିକଶ୍ରେଣୀର ଉଦ୍ଭବ ହେଲେ ମଧ୍ୟ ସୀମାହୀନ କାମର ସମୟ ବିରୁଦ୍ଧରେ ବହୁ ସଂଗ୍ରାମ କରିବାକୁ ପଡ଼ିଛି । ପ୍ରଥମ ମହାଯୁଦ୍ଧ ପର୍ଯ୍ୟନ୍ତ ପୁରାପୁରି ଜଙ୍ଗଲ ଆଇନ ଚାଲୁଥିଲା । ୧୯ଶ ଶତାବ୍ଦୀର ମଧ୍ୟ ଭାଗରେ ନୂତନ ଶ୍ରମିକଶ୍ରେଣୀର ଜନ୍ମ । ୧୮୫୨ରୁ୧୮୮୦ ପର୍ଯ୍ୟନ୍ତ ସେମାନଙ୍କ ଉପରେ ଗୋରା-କଳା ଉଭୟ ଶିଳ୍ପପତି ଅତି ନିର୍ମମ ଆକ୍ରମଣ କଲେ । ଦିନକୁ ୧୬ ଘଣ୍ଟାରୁ ୧୮ ଘଣ୍ଟା ପର୍ଯ୍ୟନ୍ତ କାମ କରିବାକୁ ବାଧ୍ୟ କରାଯାଉଥିଲା । ରବିବାର ବା ସାପ୍ତାହିକ ବା ଅନ୍ୟ କୌଣସି ଛୁଟି ନଥିଲା । ୫, ୬ ବର୍ଷର ପିଲାମାନଙ୍କୁ ମଧ୍ୟ ବୟସ୍କ ଶ୍ରମିକ ପରି କାମ କରାଯାଉଥିଲା । ୧୯୧୧ ପର୍ଯ୍ୟନ୍ତ କାମର ଘଣ୍ଟା ଉପରେ କୌଣସି ଆଇନ ନଥିଲା । ତା ବିରୁଦ୍ଧରେ ସଂଗଠିତ ଶ୍ରମିକ ପ୍ରତିବାଦ ଖୁବ କ୍ଷୀଣ ଥିଲା । ୧୮୮୧ ମସିହାରେ ପ୍ରଥମ ଫାକ୍ଟରୀ ଆକ୍ଟ ପ୍ରଣିତ ହେଲା । ତାହା ବିଲାତରେ ଲଙ୍କାସାୟାରର ପୁଞ୍ଜି-ପତିମାନଙ୍କ ଚାପ ଯୋଗୁ ହେଲା । ସେଥିରେ ଶିଶୁମାନଙ୍କର କାମର ଘଣ୍ଟା ନିର୍ଦ୍ଦିଷ୍ଟ କରାଗଲା । ପୁଣି ଥରେ ସେଇମାନଙ୍କ ଚାପରେ ୧୮୯୧ ମସିହାରେ ଫାକ୍ଟରୀ ଆକ୍ଟର ସଂଶୋଧନ ହୋଇ ପିଲାମାନଙ୍କର କାମ ସମୟ ୭ ଘଣ୍ଟା ଓ ମହିଳାମାନଙ୍କର ୧୧ ଘଣ୍ଟା କାମ ସମୟ ଧାର୍ଯ୍ୟ କରାଗଲା । ପୁଣି ଦେଶରେ ପ୍ରତିବାଦ ଉଠିଲା ଏବଂ ୧୯୧୧ ମସିହାରେ ପୁରୁଷ ଲୁଗା ସୂତା ଶିଳ୍ପ ଶ୍ରମିକମାନଙ୍କର କାମର ସମୟ ଫାକ୍ଟରୀ ଆକ୍ଟ ଅନୁଯାରେ ଦିନକୁ ୧୨ ଘଣ୍ଟା ଧାର୍ଯ୍ୟ କରାଗଲା । ସଂଗଠିତ ଟ୍ରେଡ଼ ୟୁନିଅନ ଆନ୍ଦୋଳନ ନଥିବାରୁ ସେସବୁ କାଗଜପତ୍ରରେ ରହିଲା ।

ପ୍ରଥମ ମହାଯୁଦ୍ଧ ପରେ ରୁଷିଆରେ ମହାନ ଅକ୍ଟୋବର ବିପ୍ଳବର ପ୍ରଭାବ ଦେଶରେ ଶ୍ରମିକମାନଙ୍କ ମଧ୍ୟରେ ଆନ୍ଦୋଳନ ଏବଂ ଧର୍ମଘଟ ସଂଗଠିତ କଲା ।

୧୯୧୯-୨୦ର ଧର୍ମଘଟ ସଂଗ୍ରାମ ଯୋଗୁ ୧୯୩୪ରେ ଫାକ୍ଟ୍ରି ଆକ୍ଟ ସଂଶୋଧନ କରାଯାଇ ପୁରୁଷ ଶ୍ରମିକମାନଙ୍କର କାମର ସମୟ ଦିନକୁ ୧୦ ଘଣ୍ଟା ଏବଂ ସପ୍ତାହକୁ ୫୪ ଘଣ୍ଟା ଚବୃତନିଆ କାରଖାନାରେ ଧାର୍ଯ୍ୟ କରାଗଲା । ସେହି ଅନୁସାରେ ୧୯୩୫ ମସିହାରେ ମାଇନସ୍ ଆକ୍ଟର ସଂଶୋଧନ ହେଲା ।

ଭାରତରେ ପ୍ରଥମ ଥରପାଇଁ ଦିନକୁ ୮ ଘଣ୍ଟା କାମର ଆବାଜ ଦିଆଗଲା । ୧୯୨୫ ମସିହା ଫେବୃଆରୀରେ ବମ୍ବେରେ ଅନୁଷ୍ଠିତ ଏ.ଆଇ.ଟି.ୟୁ.ସିର ପଞ୍ଚମ ସମ୍ମିଳନୀରେ—ତାପରେ ପରବର୍ତ୍ତୀ ସମ୍ମିଳନୀମାନଙ୍କରେ ଏହାର ପୁନରାବୃତ୍ତି କରାଗଲା । ଅବଶ୍ୟ ଏଆଇଟିୟୁସିର ୧୯୨୧ ମସିହାରେ ଝରିଆ ସମ୍ମିଳନୀରେ କାମର ଘଣ୍ଟା କମାଇବା ପାଇଁ ଦାବୀ ଉଠାଯାଇଥିଲା ।

ଯୁଦ୍ଧ ପର ବହୁ ଆନ୍ଦୋଳନ ପରେ ସପ୍ତମ ଭାରତୀୟ ଶ୍ରମ ସମ୍ମିଳନୀର ୧୯୪୫ ମସିହାରେ ସପ୍ତାହକୁ ୪୮ ଘଣ୍ଟା କାମ ପାଇଁ ଏକ ସର୍ବବାଦୀ ମତ ପ୍ରକାଶ ପାଇଲା ଏବଂ ସେହି ଅନୁସାରେ ସ୍ୱାଧୀନତା ପରେ ୧୯୪୮ରେ ଫ୍ୟାକ୍ଟ୍ରି ଆକ୍ଟର ପରିବର୍ତ୍ତନ କରାଯାଇ ଦିନକୁ କାମ ୮ ଘଣ୍ଟା ଧାର୍ଯ୍ୟ କରାଗଲା ।

୧୯୬୯ ମସିହାରେ ଟ୍ରେଡ଼ ୟୁନିଅନମାନେ ନ୍ୟାସନାଲ କମିଶନ ଅଫ ଲେବରଙ୍କ ପାଖରେ ଦାବୀ କରିଥିଲେ ଯେ କାମର ସମୟ ସପ୍ତାହକୁ ୪୦ ଘଣ୍ଟା ଏବଂ ପାଞ୍ଚଦିନ କରାଯାଉ । କମିଶନ ତାଙ୍କ ରିପୋର୍ଟରେ ଏହାକୁ ପ୍ରଥମେ ୪୫ ଘଣ୍ଟା ଏବଂ ପରେ ୪୦ ଘଣ୍ଟା କରିବାପାଇଁ ସୁପାରିଶ କଲେ ।

ଭାଇଜାଗଠାରେ ୧୯୮୦ରେ ଅନୁଷ୍ଠିତ ଏଆଇଟିୟୁର ୩୧ଶ ଅଧିବେଶନରେ ସପ୍ତାହକୁ ୬୪ ଘଣ୍ଟା କାମ ପାଇଁ ଦାବୀ କରାଯାଇଥିଲା ।

ଏ ଦାବୀ ଏ ପର୍ଯ୍ୟନ୍ତ ଗୃହୀତ ହୋଇନାହିଁ । ଅଭିଜ୍ଞତାରୁ ଦେଖାଯାଏ ଯେ ଦୃଢ଼ ସଂଗ୍ରାମ ଜରିଆରେ ହିଁ ଶ୍ରମିକଙ୍କର ଦାବୀ ଗୃହୀତ ହେବ ।

ମଇ ଦିବସ ଅଗ୍ରଗତି କରି ଚାଲିଛି । ●

( ଚାରି )

# ମଇ ଦିବସର ଜୟଯାତ୍ରା

## ପ୍ରଥମ ମହାଯୁଦ୍ଧରେ ମଇଦିବସ

ମଇ ଦିବସର ବିପ୍ଳବୀ ତାତ୍ପର୍ଯ୍ୟକୁ ମଳିନ କରି ସଂସ୍କାରବାଦୀ ସୋସାଲ ଡେମୋକ୍ରାଟିକ୍ ନେତାମାନେ ଏହାକୁ ଶ୍ରେଣୀ ଶାନ୍ତିର ଦିବସ ରୂପେ ପାଳନ କରିବାକୁ ଚେଷ୍ଟା କଲେ । ୧୯୧୪ ମସିହାରେ ଆରମ୍ଭ ହେଲା ପ୍ରଥମ ମହାଯୁଦ୍ଧ ।

ସାମ୍ରାଜ୍ୟବାଦୀ ଶକ୍ତିମାନେ ଉପନିବେଶ ବଣ୍ଟନ ଆଉ ପାଇଁ ପରସ୍ପର ଭିତରେ ଯୁଦ୍ଧରେ ବ୍ୟାପୃତ ହେଲେ । ଶୋଷିତ ଓ ନିର୍ଯ୍ୟାତିତ ହେଲେ ପ୍ରତ୍ୟେକ ଦେଶର ଜନସାଧାରଣ । ଯୁଦ୍ଧ ସଙ୍ଗେ ସଙ୍ଗେ ସୋସାଲ ଡେମୋକ୍ରାଟିକ ନେତାମାନଙ୍କର ମୁଖା ଖୋଲିଲା । ସେମାନେ ସାମ୍ରାଜ୍ୟବାଦୀ ଯୁଦ୍ଧକୁ ସମର୍ଥନ କଲେ । ଦ୍ୱିତୀୟ ଆନ୍ତର୍ଜାତିକ ଯୁଦ୍ଧ ସଙ୍ଗେ ସଙ୍ଗେ ଭୁଶୁଡ଼ି ପଡ଼ିଲା । ଏହାର ସାମ୍ୟବାଦୀ ନେତାମାନେ ସାଜିଲେ ସାମ୍ରାଜ୍ୟବାଦୀ ଯୁଦ୍ଧର ପ୍ରଧାନ ପ୍ରଚାରକ । ଜନସାଧାରଣଙ୍କର ସ୍ୱାର୍ଥକୁ ଜଳାଞ୍ଜଳି ଦେଇ ଯୁଦ୍ଧ ପ୍ରଚାର ପାଇଁ ଡାକରା ଦେଲେ "ପିତୃଭୂମି ବିପଦଗ୍ରସ୍ତ" । ସେଥିପାଇଁ ଯୁଦ୍ଧର ଚାପ ମଜୁରି କାଟ, ଦରଦାମ ବୃଦ୍ଧି, ନାଗରିକ ସ୍ୱାଧୀନତା ଲୋପ ଓ ଟ୍ରେଡ଼ ୟୁନିଅନ ଅଧିକାର ହରଣ ପ୍ରଭୃତି ସାମ୍ରାଜ୍ୟବାଦୀମାନଙ୍କର ଶ୍ରମିକଶ୍ରେଣୀ ଉପରେ ସମସ୍ତ ଜୁଲୁମ ଓ ଅତ୍ୟାଚାରକୁ ସମର୍ଥନ କରି ଚାଲିଲେ । ସେଥିପାଇଁ ମଇ ଦିବସକୁ ଶ୍ରମିକ ଶ୍ରେଣୀର ସଂଗ୍ରାମ ଦିବସ ରୂପେ ପାଳନ କରିବା ପରିବର୍ତ୍ତେ ଶ୍ରେଣୀ ସହଯୋଗର ଦିବସ ରୂପେ ପାଳନ କରିବାକୁ ଚେଷ୍ଟା କଲେ । ତା'ପରେ ମଇ ଦିବସ ପାଳନ ସରାସରି ବନ୍ଦ କଲେ । ୧୮୮୯ ଖ୍ରୀଷ୍ଟାବ୍ଦରେ ଆନ୍ତର୍ଜାତିକ ଶ୍ରମିକ ଏକତା ଉପରେ ଯେଉଁ ନୀତି ଗ୍ରହଣ କରି ମଇ ଦିବସ ପାଳିତ ହେଉଥିଲା ତାହା ଦ୍ୱିତୀୟ ଆନ୍ତର୍ଜାତିକର ସୋସାଲ ଡେମୋକ୍ରାଟିକ ନେତାମାନେ କବର ଦେବାକୁ ବସିଲେ । ଜର୍ମାନୀର ସୋସାଲ ଡେମୋକ୍ରାଟିକ ନେତାମାନେ ୧୯୧୫ ମସିହାରେ ମଇ ଦିବସ ଧର୍ମଘଟ ନ କରି କାମ ଉପରେ ରହିବା ପାଇଁ ଡାକରା ଦେଲେ । ଫରାସୀ ସୋସାଲିଷ୍ଟମାନେ କର୍ତ୍ତୃପକ୍ଷଙ୍କୁ ନିର୍ଭର ଜବାବ ଦେଲେ ଯେ ମଇ ପହିଲାକୁ ଭୟ କରିବାର କୌଣସି କାରଣ ନାହିଁ । ସରକାର ବିରୁଦ୍ଧରେ ବା ପୁଞ୍ଜିବାଦୀ ଶ୍ରେଣୀ ବିରୁଦ୍ଧରେ ମଇ ଦିବସ ପାଳିତ ହେବ ନାହିଁ । ଯୁଦ୍ଧରେ ଯୋଗ ଦେଇଥିବା ସବୁ ଦେଶର ସୋସାଲିଷ୍ଟମାନେ ଏହି ପନ୍ଥା ଗ୍ରହଣ କଲେ । କେବଳ ରୁଷର ବଲସେଭିକ୍‌ମାନେ ଅନ୍ୟାନ୍ୟ ଦେଶର ବିପ୍ଳବୀ ସଂଖ୍ୟାଲଘୁ ଦଳମାନେ ସେମାନଙ୍କ ଦେଶର ସମାଜବାଦ ଓ ଆନ୍ତର୍ଜାତିକ ଶ୍ରମିକ ଏକତା ପ୍ରତି ବିଶ୍ୱସ୍ତ ରହି ମଇ ଦିବସକୁ ଶ୍ରମିକର ସଂଗ୍ରାମ ଦିବସ ହିସାବରେ ପାଳନ କଲେ । ଲେନିନ୍, ଲକ୍ସେମ୍‌ବର୍ଗ ଏବଂ ଲିବ୍‌କେନେଷ୍ଟ ସୁବିଧାବାଦୀ ସୋସାଲ ଡେମୋକ୍ରାଟିକମାନଙ୍କର ବିଶ୍ୱାସଘାତକତା ବିରୁଦ୍ଧରେ ସ୍ୱର ଉଠାଇଲେ । ୧୯୧୬ ମସିହା ମଇ ଦିବସରେ ଆଂଶିକ ଧର୍ମଘଟ, ସଭା, ଶୋଭାଯାତ୍ରା ଏବଂ ହାତାହାତି ଲଢ଼େଇ ୟୁରୋପର ସହରମାନଙ୍କରେ ଦେଖାଦେଲା । ଯୁଦ୍ଧରତ ଦେଶମାନଙ୍କର ଶ୍ରମିକଶ୍ରେଣୀ ସୋସାଲ ଡେମୋକ୍ରାଟିକ ନେତାମାନଙ୍କର ସୁବିଧାବାଦୀ କବଳରୁ ଖସିବାକୁ ଲାଗିଲେ ।

୧୯୧୫ର ଜିମରୱାଲ୍ଡ ଓ ୧୯୧୬ର କିଏନ୍‌ଥାଲ ସମ୍ମିଳନୀରେ ବିପ୍ଳବୀ ସୋସାଲିଷ୍ଟ ନେତୃତ୍ୱ ଅଲଗା ନୀତି ଗ୍ରହଣ କଲେ । ଲେନିନ ସାମ୍ରାଜ୍ୟବାଦ ଯୁଦ୍ଧ

ବିରୁଦ୍ଧରେ ଗୃହଯୁଦ୍ଧର ଡାକରା ଦେଲେ । ୟୁରୋପର ପ୍ରତ୍ୟେକ ଦେଶରେ ଲେନିନଙ୍କର ଏହି ନେତୃତ୍ୱ ତଳେ ସୋସାଲିଷ୍ଟ ଆନ୍ଦୋଳନ ଗଢ଼ି ଉଠିଲା— ଉପରୋକ୍ତ ଦୁଇଟି ସମ୍ମିଳନୀ ଲେନିନଙ୍କ ନେତୃତ୍ୱ ଗ୍ରହଣ କଲା । ସମଗ୍ର ୟୁରୋପରେ ଏହି ବିପ୍ଳବୀ ନେତୃତ୍ୱ ଅଧୀନରେ ସୁବିଧାବାଦୀ ସୋସାଲିଷ୍ଟ ନେତୃତ୍ୱକୁ ଫୋପାଡ଼ି ଦେଇ ଶ୍ରମିକ ଶ୍ରେଣୀ ଆଗେଇ ଚାଲିଲା । ମଇଦିବସ ଶ୍ରମିକ ଶ୍ରେଣୀ ସଂଗ୍ରାମ ଦିବସ ପାଇଁ ଓ ସାମ୍ରାଜ୍ୟବାଦୀ ଯୁଦ୍ଧ ବିରୁଦ୍ଧରେ ଗୋଟିଏ ଦିବସ ରୂପେ ପାଳିତ ହେଲା । ୧୯୧୬ ମସିହାରେ ବର୍ଲିନରେ ଲିବ୍‌ନେକ୍‌ଟଙ୍କ ନେତୃତ୍ୱରେ ବିରାଟ ସମାବେଶ ହେଲା । ଏହା ଯୁଦ୍ଧ ଭିତରେ ବିଶେଷତଃ ଜର୍ମାନୀର ବକ୍ଷ ଉପରେ ଯୁଦ୍ଧବିରୋଧୀ ସମାବେଶ ଭିତରେ ବିରାଟ । ଜର୍ମାନୀର ସାମ୍ରାଜ୍ୟବାଦୀମାନେ ଜାତୀୟତାର ମାୟା-ଜାଲ ବିସ୍ତାରି 'ପିତୃଭୂମି'ର ରକ୍ଷା ପାଇଁ ଯେଉଁ ଯୁଦ୍ଧ ପରିଚାଳନା କରୁଥିଲେ ଏବଂ ଶ୍ରମିକ ଶ୍ରେଣୀକୁ ଠକି ଦଲାଲ ସୋସାଲ ଡେମୋକ୍ରାଟିକ ନେତା (ସୋସାଲିଷ୍ଟ) ମାନେ ସେତେବେଳେ ଯେଉଁ ଯୁଦ୍ଧର ସ୍ତୁତି ଗାନ କରୁଥିଲେ, ତାହା କବଳରୁ ଯେ ଜର୍ମାନ ଶ୍ରମିକ ଶ୍ରେଣୀ ମୁକ୍ତ ହେଉଥିଲେ ତାହା ୧୯୧୬ର ମଇ ଦିବସ ସମାବେଶରୁ ସୂଚିତ ହେଉଥିଲା । ଏହା କେବଳ ଜର୍ମାନୀ ପାଇଁ ନୁହେଁ, ସମଗ୍ର ବିଶ୍ୱର ସ୍ୱାଧୀନତା ଓ ସମାଜବାଦ ଏବଂ ସର୍ବୋପରି ଶାନ୍ତି ପାଇଁ ଏକ ଗୁରୁତ୍ୱପୂର୍ଣ୍ଣ ଘଟଣା । ବିଶ୍ୱର ଶ୍ରେଷ୍ଠ ଯୁଦ୍ଧଖୋର ଓ ସାମ୍ରାଜ୍ୟବାଦୀ ଜର୍ମାନ ଏକଚାଟିଆ ପୁଞ୍ଜିବାଦୀ ଗୋଷ୍ଠୀର ମୂଳଦୁଆ ଏହା ଫଳରେ ଭୁଶୁଡ଼ି ପଡ଼ିଲା । ସେଥିପାଇଁ ୧୯୧୬ର ମଇ ଦିବସ ହେଲା ବିଶ୍ୱର ଏକ ଗୌରବମୟ ଦିବସ ।

୧୯୧୭ ରେ ଆମେରିକା ଯୁକ୍ତରାଷ୍ଟ୍ର ଯୁଦ୍ଧରେ ଯୋଗଦେଲା । ସେ ଦିନ ପର୍ଯ୍ୟନ୍ତ ଆମେରିକାନ୍ ଫେଡ଼େରେସନ ଅଫ୍ ଲେବରର ନେତାମାନଙ୍କର ସମସ୍ତ ଚକ୍ରାନ୍ତ ସତ୍ତ୍ୱେ ମଇ ଦିବସ ପାଳିତ ହୋଇ ଆସୁଥିଲା । ଯୁଦ୍ଧ ହେଲେ ମଧ୍ୟ ସୋସାଲିଷ୍ଟ ପାର୍ଟିର ବିପ୍ଳବୀ ଅଂଶ ମଇ ଦିବସକୁ ଗୁରୁତ୍ୱର ଦେଇ ଦେଖୁଥିଲେ ଏବଂ ମଇ ଦିବସ ପାଳନ ପାଇଁ ଚେଷ୍ଟା କରୁଥିଲେ ।

୧୯୧୭ ରେ ରୁଷିଆର ମଇ ଦିବସ ରୁଷ ବିପ୍ଳବ ପାଇଁ ଏକ ପ୍ରସ୍ତୁତି । ରୁଷିଆର ପ୍ରତ୍ୟେକ ଅଞ୍ଚଳରେ ଶ୍ରମିକ ଶ୍ରେଣୀ କ୍ଷମତା ଦଖଲ ପାଇଁ ପ୍ରସ୍ତୁତ ହେଉଥିଲେ । ସେତେବେଳେ ଫେବୃୟାରୀ ବିପ୍ଳବ ସରି ଯାଇଥିଲା । ରୁଷର ଜାର ଜନସାଧାରଣଙ୍କ ରୋଷରେ ଲୋପ ପାଇଥିଲା । କେରେନେସ୍କି ସରକାର ବିରୁଦ୍ଧରେ ଜନସାଧାରଣ ବିକ୍ଷୋଭ ଦେଖା ଦେଉଥିଲା । ଜନସାଧାରଣ ନିଜର ଅଭିଜ୍ଞତାରୁ ବୁଝିଥିଲେ ଯେ କେରେନେସ୍କି ସରକାର ଯୁଦ୍ଧର ଅବସାନ କରିବ ନାହିଁ, ରୁଷିଆକୁ ଶାନ୍ତି ଦେଇପାରେ ନା ଓ ଜନସାଧାରଣଙ୍କୁ ରୁଟି, କାମ ଓ କୃଷକଙ୍କୁ ଜମି ଦେଇପାରେ ନା । ତେଣୁ ଏହାର ବିଲୋପ ଦରକାର । ତା ବଦଳରେ ବଲ୍‌ସେଭିକମାନଙ୍କ ନେତୃତ୍ୱରେ ସର୍ବହରାର ଏକନାୟକତ୍ୱ ପ୍ରତିଷ୍ଠାହିଁ ଜନସାଧାରଣଙ୍କ ମୁକ୍ତିର

ଏକ ମାତ୍ର ପଥ । ସେଥିପାଇଁ ମଇ ଦିବସ ଓ ତାପର ସମୟରେ ରୁଷିଆରେ ସର୍ବହରାର ବିପ୍ଳବ ପାଇଁ ପ୍ରସ୍ତୁତ ହୁଅନ୍ତି ।

## ରୁଷ ବିପ୍ଳବ ଓ ମଇ ଦିବସ

୧୯୧୭ ନଭେମ୍ବର ସାତ । ଦୁନିଆର ଇତିହାସରେ ଏକ ଯୁଗାନ୍ତକାରୀ ଦିବସ । ପ୍ରଥମ ଥର ପାଇଁ ପୃଥିବୀର ଏକଷଷ୍ଠାଂଶ ପୁଞ୍ଜିବାଦୀ ଦୁନିଆର କବଳରୁ ମୁକ୍ତି ହେଲା । ଷୋଳ କୋଟି ଜନସାଧାରଣ ପୁଞ୍ଜିବାଦୀ ଓ ସାମନ୍ତବାଦୀ ଶୋଷକଙ୍କୁ ଧ୍ୱଂସ କରି ଲେନିନଙ୍କ ନେତୃତ୍ୱରେ ଶୋଷଣ ବିହୀନ ସମାଜ ପ୍ରତିଷ୍ଠା କଲେ । ସୋଭିଏଟ୍ ରୁଷ ହେଲା ପୃଥିବୀର ପ୍ରଥମ ସର୍ବହରା ରାଷ୍ଟ୍ର । ଶ୍ରମିକ ଓ ମେହନତକାରୀ ଶ୍ରେଣୀର ଯୁଗ ଯୁଗର ଆଶା ଆକାଂକ୍ଷା ପ୍ରଥମ ଥର ପାଇଁ ପୂରଣ ହେଲା । ଦୁନିଆରେ ପ୍ରଥମ କରି ଶ୍ରମିକ ଶ୍ରେଣୀ ନିଜର ରାଷ୍ଟ୍ର ଗଢ଼ିଲା । ନିଜେ କ୍ଷମତା ଦଖଲ କଲା ଏବଂ ନିଜେ ହେଲା ତାହାର ଶାସକ । ଆଜି ପର୍ଯ୍ୟନ୍ତ ସେ ଦୁନିଆରେ ସବୁଠାରେ ଶୋଷିତ ହୋଇ ଆସୁଥିଲା । ପୁଞ୍ଜିବାଦୀ ଓ ସାମନ୍ତବାଦୀମାନଙ୍କର ଶାସନ ଓ ଶୋଷଣର ରଥ ଚକ ତଳେ ପେଷିହୋଇ ଯାଉଥିଲା । କିନ୍ତୁ ଆଜି ପ୍ରଥମଥର ପାଇଁ ସେ ହେଲା ମୁକ୍ତ । ଏହା ଯେ କେବଳ ରୁଷର ଶ୍ରମିକଶ୍ରେଣୀକୁ ଶୋଷଣ କବଳରୁ ମୁକ୍ତକଲା ତାହା ନୁହେଁ, ସଙ୍ଗେ ସଙ୍ଗେ ପୃଥିବୀର ପ୍ରତ୍ୟେକ ଦେଶର ପୁଞ୍ଜିବାଦୀ ଓ ଅନୁନ୍ନତ ଉପନିବେଶର ଜନସାଧାରଣଙ୍କ ମୁକ୍ତିର ଏକ ନୂଆ ରାସ୍ତା ଦେଖାଇଲା ଓ ପ୍ରତ୍ୟେକଙ୍କ ମନରେ ଆଶା ଓ ସାହସର ସଞ୍ଚାର କଲା । ଶ୍ରମିକଶ୍ରେଣୀ କେବଳ ୮ଘଣ୍ଟା କାମର ଦିନ ବା ଅନ୍ୟାନ୍ୟ ଦାବୀ ପାଇଁ ଆନ୍ଦୋଳନ ନକରି ଏଣିକି ଶାସନ କ୍ଷମତା ଦଖଲର ଓ ଶୋଷଣ ବିହୀନ ସମାଜ ପ୍ରତିଷ୍ଠା ପାଇଁ ଶପଥ ନେଲା । ମଇ ଦିବସର ଚରିତ୍ର ବଦଳିଲା

ପୃଥିବୀରେ ବିଭିନ୍ନ ସ୍ତରର ସମାଜ ବ୍ୟବସ୍ଥା ଦେଖାଦେଲା । ଉପନିବେଶିକ ସାମନ୍ତବାଦୀ ବ୍ୟବସ୍ଥା ଯେଉଁଠି ମଧ୍ୟଯୁଗୀୟ ଅତ୍ୟାଚାରର ବ୍ୟବସ୍ଥା, ଯେଉଁଠି ଶ୍ରମିକଶ୍ରେଣୀ ପ୍ରାୟ ଅର୍ଦ୍ଧଦାସ ଅବସ୍ଥାରେ ରହିଲା, ଦିନକୁ ୧୦ ଘଣ୍ଟା ୧୨ ଘଣ୍ଟା କାମ କରିବାକୁ ବାଧ୍ୟ ହେଲା, ଅର୍ଦ୍ଧନଗ୍ନ ଓ ଅନାହାର ଅବସ୍ଥାରେ ପଡ଼ି ରହିଲା, ଖାଦ୍ୟ ଉତ୍ପାଦନକାରୀ ହେଲା ଭୋକିଲା ଏବଂ ବସ୍ତ୍ର ଉତ୍ପାଦନ କରି ରହିଲା ଲଙ୍ଗଳା । ସେ ଅଞ୍ଚଳରେ ମଇ ଦିବସ ପୂର୍ବପରି ୮ ଘଣ୍ଟା କାମର ଦିନ ସହିତ ଅନ୍ୟାନ୍ୟ ଦାବୀ ଉପସ୍ଥାପିତ କଲା । ତାହା ସଙ୍ଗେ ସଙ୍ଗେ ପୁଞ୍ଜିବାଦୀ ଓ ସାମନ୍ତବାଦୀ ସମାଜ ବ୍ୟବସ୍ଥାର ବିଲୋପସାଧନ କରି ମୁକ୍ତି ଓ ସ୍ୱାଧୀନତାର ଆବାଜ ଉଠାଇଲା । ଦେଶର ଶ୍ରମିକ କୃଷକ ଏକତା ପ୍ରତିଷ୍ଠା ପାଇଁ ଶପଥ ନେଲା । ଦୁନିଆର ସର୍ବହରାର ଏକମାତ୍ର ରାଷ୍ଟ୍ର ସହିତ ସୌହାର୍ଦ୍ଦ୍ୟ ଦେଖାଇ ଦୁନିଆର ସର୍ବହରାର ଏକତା ପ୍ରତିଷ୍ଠା ପାଇଁ ଶ୍ରମିକଶ୍ରେଣୀ ଶପଥ ନେଲା ।

ଆଉ କେତେକ ଦେଶରେ ପୁଞ୍ଜିବାଦୀ ବ୍ୟବସ୍ଥା ବଞ୍ଚି ରହିଲା । ଆଠ ଘଣ୍ଟା କାମର ଦିନ ହାସଲ ହେଲେ ବି ଶ୍ରମିକଶ୍ରେଣୀ ପୁଞ୍ଜିବାଦୀ ଶୋଷଣରୁ ମୁକ୍ତି

ହେଲା । ମାଇ ଦିବସରେ ତାର ଆହ୍ୱାନ ହେଲ—ପୁଞ୍ଜିବାଦୀ ଶୋଷଣ କବଳରୁ ମୁକ୍ତ ହେବ । ସେ ଉପଲବ୍ଧି କଲା ଯେ ଯେତେଦିନ ତାଙ୍କ ଦେଶର ପୁଞ୍ଜିବାଦୀ-ମାନେ ଦୁନିଆର କେତେକ ଅନୁନ୍ନତ ଜାତିଙ୍କୁ ଔପନିବେଶିକ ଅବସ୍ଥାରେ ଶୋଷଣ କରି ଚାଲିଥିବେ, ସେତେଦିନ ପର୍ଯ୍ୟନ୍ତ ସେମାନଙ୍କର ମୁକ୍ତି ଅସମ୍ଭବ । ଉପନିବେଶ ଶୋଷଣରେ ପୁଷ୍ଟ ସାମ୍ରାଜ୍ୟବାଦୀ ଶ୍ରେଣୀ ନିଜ ଦେଶର ଶ୍ରମିକ ଓ ମେହେନତକାରୀ ଜନସାଧାରଣଙ୍କ ଉପରେ ଶୋଷଣ ଅତ୍ୟାଚାର ବଜାୟ ରଖିବେ । ସେଥିପାଇଁ ସେହି ଦେଶମାନଙ୍କର ଶ୍ରମିକଶ୍ରେଣୀର ମୁକ୍ତି, ଉପନିବେଶର ଜନସାଧାରଣଙ୍କର ମୁକ୍ତି ଓ ସ୍ୱାଧୀନତା ସହିତ ଏତେ ଘନିଷ୍ଠଭାବେ ଜଡ଼ିତ । ତେଣୁ ମାଇ ଦିବସରେ ସେମାନଙ୍କର ଡାକ ହେଲା ପୁଞ୍ଜିବାଦୀ ଦେଶ ଓ ଉପନିବେଶର ଶ୍ରମିକମାନଙ୍କର ଏକତା ଓ ଉଭୟଙ୍କର ମୁକ୍ତି । ତା' ସଙ୍ଗେ ସଙ୍ଗେ ଦୁନିଆର ଏକମାତ୍ର ଶ୍ରମିକ ମଜଦୁର ଦେଶ ସୋଭିଏତ୍ ରୁଷ ସହିତ ମୈତ୍ରୀକୁ ଦୃଢ଼ତର କରି ନିଜ ଦେଶରେ ସେହିପରି ସମାଜ ବ୍ୟବସ୍ଥା ପ୍ରତିଷ୍ଠା ପାଇଁ ଶପଥ ନିଆଯାଏ । ଶ୍ରମିକଶ୍ରେଣୀ ଭିତରେ ଦଳମତ ନିର୍ବିଶେଷରେ ଏକତା ପ୍ରତିଷ୍ଠା ପାଇଁ କାର୍ଯ୍ୟକ୍ରମ ନିଆଯାଏ ।

ସୋଭିଏତ୍ ୟୁନିଅନ ଦୁନିଆର ପ୍ରଥମ ସର୍ବହରାର ରାଷ୍ଟ୍ର । ସମାଜର ନିପୀଡ଼ିତ ଓ ଶୋଷିତ ଜନସାଧାରଣଙ୍କର ଆଲୋକ ସ୍ତମ୍ଭ । ଶ୍ରମିକଶ୍ରେଣୀ ପୁଞ୍ଜିବାଦୀ ଦେଶଭଳି ଶୋଷିତ ହେଉନାହିଁ । ସେ ପାଇଛି ନିଜର ରାଷ୍ଟ୍ର । ନିଜେ ହିଁ ତା'ର ମାଲିକ । ସେ ରାଷ୍ଟ୍ରକୁ ତାକୁହିଁ ଗଢ଼ିବାକୁ ହେବ । ତା' ଫଳରେ ତାର ସୁଖସମୃଦ୍ଧି ବଢ଼ି ଚାଲିବ । ତେଣୁ ମାଇ ଦିବସରେ ସୋଭିଏତ୍ ଶ୍ରମିକ ଶ୍ରେଣୀର କର୍ତ୍ତବ୍ୟ ହେଲା ପ୍ରତ୍ୟେକ କ୍ଷେତ୍ରରେ ଉତ୍ପାଦନ ବଢ଼ାଇବା । ଦେଶର ସ୍ୱାଧୀନତା ଓ ଏକତାକୁ ରକ୍ଷା କରିବା ପାଇଁ ଦେଶ ଭିତର ଓ ବାହାରର ସମସ୍ତ ଶତ୍ରୁ ବିରୁଦ୍ଧରେ ସଜାଗ ରହିବା ଏବଂ ସେମାନଙ୍କ ବିରୁଦ୍ଧରେ ନିର୍ମମ ସଂଗ୍ରାମ ଚଳାଇବା । ଦେଶର ଶ୍ରମିକ କୃଷକ ଏକତା ପ୍ରତିଷ୍ଠା କରିବା, କୃଷିର ସାମାଜିକୀକରଣ, ଷ୍ଟାଖାନୋଭ୍ ଆନ୍ଦୋଳନ, ଜାତୀୟ ଆୟବୃଦ୍ଧି ଏବଂ ଦେଶର ସର୍ବାଙ୍ଗସୁନ୍ଦର ଉନ୍ନତି ହେଲା ମାଇ ଦିବସର ଶପଥ । ଯେହେତୁ ସୋଭିଏତ୍ ରୁଷ ସର୍ବହରା ରାଷ୍ଟ୍ର ଏବଂ ତାକୁ ଧ୍ୱଂସ କରିବା ପାଇଁ ଦୁନିଆର ସମସ୍ତ ସାମ୍ରାଜ୍ୟବାଦୀ ଓ ଶୋଷକ ଗୋଷ୍ଠୀ ଏକଯୁଟ ହୋଇ ଯୁଦ୍ଧର ନିଆଁ ଜାଳିବାକୁ ବସିଛନ୍ତି, ସେହି ହେତୁ ସୋଭିଏତ୍ ରୁଷ ଯୁଦ୍ଧବିରୋଧୀ ଏବଂ ସାମ୍ରାଜ୍ୟବାଦ ବିରୋଧୀ । ସେଥିପାଇଁ ପ୍ରତ୍ୟେକ ପୁଞ୍ଜିବାଦୀ ଦେଶରେ ଜନତାର ଗଣତାନ୍ତ୍ରିକ ସରକାର ପ୍ରତିଷ୍ଠା ଏବଂ ଔପନିବେଶିକ ଜନସାଧାରଣଙ୍କର ସାମ୍ରାଜ୍ୟବାଦ କବଳରୁ ମୁକ୍ତି ତାହାର ପ୍ରଧାନ କାମ୍ୟ । ସୋଭିଏତ୍ ରୁଷ ସେଥିପାଇଁ ଦୁନିଆର ସମସ୍ତ ଜନସାଧାରଣଙ୍କର ଏବଂ ବିଶେଷତଃ ଉପନିବେଶର ଜନସାଧାରଣଙ୍କର ମୁକ୍ତି ଓ ସ୍ୱାଧୀନତାର ପ୍ରଧାନ ସହାୟକ ଓ ବନ୍ଧୁ । ଦୁନିଆର ସ୍ୱାଧୀନତାର ଓ ଶ୍ରମିକଶ୍ରେଣୀ ଏକତାର ସଶସ୍ତ୍ର ପ୍ରହରୀ । ସେଇ ହିସାବରେ ସୋଭିଏତ୍ ରୁଷର ଜନସାଧାରଣ ଓ

ସରକାର ମଇ ଦିବସରେ ଶପଥ ନିଅନ୍ତି ବିଶ୍ୱଶାନ୍ତି ପ୍ରତିଷ୍ଠା ପାଇଁ, ଦୁନିଆର ଶ୍ରମିକ ଶ୍ରେଣୀର ଏକତାକୁ ଶକ୍ତିଶାଳୀ କରିବା ପାଇଁ, ସାମ୍ରାଜ୍ୟବାଦର ଲୋପ ପାଇଁ, ପ୍ରତ୍ୟେକ ଦେଶ ବିଶେଷତଃ ଉପନିବେଶମାନଙ୍କର ମୁକ୍ତି ଓ ସ୍ୱାଧୀନତା ପାଇଁ ଏବଂ ବିକାଶଶୀଳ ଓ ଅନୁନ୍ନତ ଦେଶମାନଙ୍କର ତଥା ଜନସାଧାରଣଙ୍କର ସର୍ବାଙ୍ଗୀନ ଉନ୍ନତି ପାଇଁ ।

ମଇ ଦିବସ ଦୁନିଆରେ ପୂର୍ବ ଅପେକ୍ଷା ଆହୁରି ଜାକଜମକରେ ପାଳିତ ହେଲା । ସଂଗ୍ରାମୀ ମନୋଭାବ ପୂର୍ବଅପେକ୍ଷା ଆହୁରି ଅଧିକ ଦେଖାଦେଲା । କିନ୍ତୁ ତା ସତ୍ତ୍ୱେ ପ୍ରତିକ୍ରିୟାଶୀଳ ସୁବିଧାବାଦୀ ନେତାମାନେ ମଇ ଦିବସର ଐତିହ୍ୟକୁ କଦର୍ଥ କରିବାକୁ ଚେଷ୍ଟା କଲେ । ପୁଣି ଥରେ ମଇ ଦିବସର ଗୁରୁତ୍ୱ କମାଇବା ପାଇଁ ଚକ୍ରାନ୍ତ କଲେ । ଆମେରିକାନ ଫେଡ଼େରେସନ ଅଫ ଲେବର (A.F. of L) ଯାହାର ନେତୃତ୍ୱରେ ମଇ ଦିବସ ଆରମ୍ଭରୁ ଜନ୍ମଲାଭ କରିଥିଲା, ସଙ୍ଗଠନର ନେତାମାନେ ବର୍ତ୍ତମାନ ଏହାକୁ ପାଳନ ନ କରିବା ପାଇଁ ଠିକ୍ କଲେ । ଶ୍ରମିକ ଦିବସକୁ ମଇ ପହିଲାରେ ପାଳନ ନ କରି ସେପ୍ଟେମ୍ବର ମାସର ପ୍ରଥମ ସୋମବାର ଦିନ ପାଳନ କଲେ । ପରେ ଆମେରିକା ସଭାପତି ହୁଭରଙ୍କ ସରକାର ସହିତ ମିଶି ଫେଡ଼େରେସନ ମଇ ପହିଲାକୁ "ଶିଶୁ ସ୍ୱାସ୍ଥ୍ୟ ଦିବସ" ରୂପେ ପାଳିବାକୁ ଠିକ କଲେ । ଶିଶୁମାନଙ୍କ ପାଇଁ ହଠାତ୍ ଆନ୍ତରିକତାର ମୋହଜାଲ ପଛରେ ଆଉ ବହୁତ କଥା ରହିଲା । ସେ ସବୁ କଥା ଆମେରିକାନ ଫେଡ଼େରେସନ ଅଫ ଲେବରର ୧୯୨୮ ସମ୍ମିଳନୀ ପାଇଁ ପ୍ରସ୍ତୁତ କାର୍ଯ୍ୟକାରୀ କମିଟିର ରିପୋର୍ଟରୁ ବୁଝାପଡ଼େ । ଏଥିରେ କୁହାଯାଇଛି :—

"କମ୍ୟୁନିଷ୍ଟମାନେ ବର୍ତ୍ତମାନ ସୁଦ୍ଧା ମଇ ପହିଲାକୁ ଶ୍ରମିକ ଦିବସ ହିସାବରେ ପାଳନ କରୁଛନ୍ତି । ଏଣିକି ଆମେରିକା ଯୁକ୍ତରାଷ୍ଟ୍ରର କଂଗ୍ରେସ (ପାର୍ଲିଆମେଣ୍ଟ)ର ନିଷ୍ପତ୍ତି ଅନୁସାରେ ସଭାପତି ଯେପରି ଚାହିଁଛନ୍ତି, ସେହିପରି ମଇ ପହିଲା ଶିଶୁ ସ୍ୱାସ୍ଥ୍ୟ ଦିବସରୂପେ ପାଳନ କରିବାକୁ ହେବ । ଉଦ୍ଦେଶ୍ୟ ହେଉଛି ବର୍ଷସାରା ଶିଶୁମାନଙ୍କର ସ୍ୱାସ୍ଥ୍ୟରକ୍ଷା ପାଇଁ ମନୋବୃତ୍ତି ସୃଷ୍ଟି କରିବା । ଏହା ଗୋଟିଏ ଅତି ମୂଲ୍ୟବାନ କାର୍ଯ୍ୟ । ଏହା ସଙ୍ଗେ ସଙ୍ଗେ ମଧ୍ୟ ମଇ ପହିଲା ଆଉ ଏଣିକି ଧର୍ମଘଟ ଦିବସ କିମ୍ବା କମ୍ୟୁନିଷ୍ଟ ଦିବସ ରୂପେ ଆଉ ଗଣା ହେବ ନାହିଁ ।"

ମହାଯୁଦ୍ଧ ପରେ ପୁଞ୍ଜିବାଦର ସାଧାରଣ ସଙ୍କଟ ଆରମ୍ଭ ହେଲା । ଅତଏବ ପୁଞ୍ଜିବାଦୀ ସମାଜ ଗୋଟିଏ ପରେ ଗୋଟିଏ ଅଂଶରେ ଭୁଶୁଡ଼ିବାକୁ ଲାଗିଲା । ଜନସାଧାରଣଙ୍କର କୌଣସି ଗୋଟିଏ ହେଲେ ସମସ୍ୟାର ସମାଧାନ ହେଲା ନାହିଁ । ବରଂ ଦିନୁ ଦିନ ଅବସ୍ଥା ଖରାପ ହେବାରେ ଲାଗିଲା । ପୁଞ୍ଜିବାଦୀମାନେ ନିଜର ସଙ୍କଟକୁ ସମାଧାନ କରିବା ପାଇଁ ଶ୍ରମିକ ଓ ମେହନତକାରୀ ଜନସାଧାରଣଙ୍କ ଉପରେ ନୂଆ ନୂଆ ଆକ୍ରମଣ ଆରମ୍ଭ କଲେ । ଶ୍ରମିକମାନେ ବାଧ୍ୟହୋଇ ଛଟେଇ, ଦରମାକାଟ,

ହେବୋର୍ଗ, ବାମର ହୃଦ୍‌ବର୍ତି ଓ ଲଲ୍ ଅଡ୍ଜନ୍ ପ୍ରଭୃତି ଅନ୍ୟାନ୍ୟ ଆକ୍ରମଣ ବିରୁଦ୍ଧରେ ଧର୍ମଘଟ ପ୍ରଭୃତି ସଂଗ୍ରାମ ଆରମ୍ଭ କଲେ । ସୁବିଧାବାଦୀ ସୋସାଲିଷ୍ଟମାନେ ପୁଞ୍ଜିବାଦୀ ସମାଜ ଭିତରେ ସୁବିଧା ସୁଯୋଗ ଆସିବ ଓ ସୁଖୀ ଜୀବନ ଗଢ଼ି ଉଠିବ ବୋଲି ସ୍ୱପ୍ନ ଦେଖି କହିବାକୁ ଲାଗିଲେ । କିନ୍ତୁ ଏସବୁ ସତ୍ତ୍ୱେ ୧୯୨୯-୩୦ରେ ଆମେରିକା ଓ ୟୁରୋପର ତଥା ପୃଥିବୀର ଶ୍ରମିକ ଆନ୍ଦୋଳନ ଏକ ନୂତନ ସ୍ତରକୁ ଗଲା ।

## ଫାସିଜମ୍‌ର ଜନ୍ମ ଓ ମଇ ଦିବସ

ପୁଞ୍ଜିବାଦର ସଙ୍କଟ ଘନୀଭୂତ ହେବା ସଙ୍ଗେ ସଙ୍ଗେ ଫାସିଜିମ ସଙ୍ଗଠିତ ହେଲା । ମୁମୂର୍ଷୁ ପୁଞ୍ଜିବାଦ ଆଉ ପୂର୍ବର ମୋହଜାଲ ରଖି ପାରିଲା ନାହିଁ । ଗଣତନ୍ତ୍ରର ପ୍ରହସନ ମଧ୍ୟ ଦେଖାଇବା ଅସମ୍ଭବ ହୋଇ ଉଠିଲା । ଜନସାଧାରଣଙ୍କର ସମସ୍ତ ଅଧିକାରକୁ କାଟି ଏକଛତ୍ର ରାଜତ୍ୱ ଚଳାଇଲା ଓ ପୃଥିବୀରେ ଯୁଦ୍ଧର ନିଆଁ ଜାଳି ଦେବାପାଇଁ ଚେଷ୍ଟା କଲା । ପୁଞ୍ଜିବାଦର ଏହି ଲଙ୍ଗଳା ହିଂସ୍ର ରୂପକୁ ଫାସିଜିମ କହନ୍ତି । ୧୯୩୩ରୁ ୧୯୩୯ ପର୍ଯ୍ୟନ୍ତ ଜର୍ମାନ ଫାସିଜିମ ଓ ତାର ନେତା ହିଟଲର ଫାସିଷ୍ଟ ଆନ୍ଦୋଳନ ଓ ପୃଥିବୀର ପ୍ରତିକ୍ରିୟାଶୀଳ ଶକ୍ତିମାନଙ୍କର ପ୍ରଧାନ ହୋଇ ଉଠିଲା । ମୁସୋଲିନୀ ନେତୃତ୍ୱରେ ଇଟାଲି ଏବଂ ଫାସିଷ୍ଟ ଜାପାନ ଆକ୍ରମଣକାରୀ ଶକ୍ତି ହିସାବରେ ଗଢ଼ି ଉଠିଲେ । ଇଂଲଣ୍ଡ, ଆମେରିକା ଓ ଫ୍ରାନସ ପ୍ରଭୃତିର ସାମ୍ରାଜ୍ୟବାଦୀମାନେ ହିଟଲର ମୁସୋଲିନୀ ଓ ଜାପାନର ଫାସିଷ୍ଟ ଅଭ୍ୟୁତ୍ଥାନକୁ ସାହାଯ୍ୟ କଲେ । ପୂର୍ବର ଭରସାଇଲସ ଚୁକ୍ତି ମଧ୍ୟ ରଦ କରିଦେଲେ । ଏକମାତ୍ର ଉଦ୍ଦେଶ୍ୟ ରହିଲା ଦୁନିଆର ସର୍ବହରାର ଏକମାତ୍ର ରାଷ୍ଟ୍ର ସୋଭିଏତ ୟୁନିଅନକୁ ଲୋପକରିବା ପାଇଁ ଯୁଦ୍ଧର ଆୟୋଜନ । ସେମାନେ ଭାବିଲେ ଯେ ତାହାହେଲେ ସେମାନେ ନିଜ ଦେଶର ଶ୍ରମିକ ଆନ୍ଦୋଳନକୁ ମୂଳପୋଛ କରିଦେବେ ଏବଂ ଦୁନିଆ ପୁଞ୍ଜିବାଦକୁ ନିଷ୍କଣ୍ଟକ କରିବେ । ଫାସିଜିମ୍‌ର ଏହି ଉଦୟ ପ୍ରତ୍ୟେକ ଦେଶରେ ଶ୍ରମିକ ଓ ମେହନତକାରୀ ଶ୍ରେଣୀଙ୍କ ବିରୁଦ୍ଧରେ ପ୍ରଧାନ ବିପଦ ରୂପେ ଠିଆହେଲା । ସେଥିପାଇଁ ମଇଦିବସର ପ୍ରଧାନ ସ୍ଲୋଗାନ ହେଲା ଯୁଦ୍ଧ ଓ ଫାସିଜିମ୍ ବିରୁଦ୍ଧରେ ଶାନ୍ତି ପ୍ରତିଷ୍ଠା କରିବା । ପୁଞ୍ଜିବାଦୀ ଦେଶ ଓ ଉପନିବେଶଗୁଡ଼ିକରେ ଶ୍ରମିକଶ୍ରେଣୀ ମଇ ଦିବସରେ ଫାସିଜିମ ବିରୁଦ୍ଧରେ, ପୁଞ୍ଜିବାଦୀ ସଙ୍କଟ ବିରୁଦ୍ଧରେ ଏବଂ ନିଜର ବଞ୍ଚିବାର ଦାବୀ ପାଇଁ ଆହୁରି ଜୋରଦାର ଆନ୍ଦୋଳନ କଲେ ଓ ଦେଶର ବ୍ୟାପକ ଜାତୀୟ ମିଳିତ ସାମ୍ମୁଖ୍ୟ ଗଢ଼ି ତୋଳିଲେ । ଏହାହିଁ ହେଲା ଶ୍ରମିକଶ୍ରେଣୀର ମଇ ଦିବସର ଶପଥ—

## ୨ୟ ମହାଯୁଦ୍ଧ ଓ ତାପରେ

୨ୟ ମହାଯୁଦ୍ଧ ଆରମ୍ଭ ହେଲା । ଦୁଇ ଦଳ ସାମ୍ରାଜ୍ୟବାଦୀଙ୍କ ଭିତରେ ଯୁଦ୍ଧର ନିଆଁ ଜଳିଲା । ହିଟଲର ନେତୃତ୍ୱରେ ଫାସିଷ୍ଟବାଦ ଦୁନିଆକୁ ଜୟ

କରିବାକୁ ବସିଲେ । ସାମ୍ରାଜ୍ୟବାଦୀମାନେ ଯୁଦ୍ଧର ସମସ୍ତ ବୋଝକୁ ଜନସାଧାରଣଙ୍କ ଉପରେ ଲଦିବାକୁ ଚେଷ୍ଟାକଲେ । ଶ୍ରମିକଶ୍ରେଣୀ ଫାସିଜିମ୍, ଯୁଦ୍ଧ ଏବଂ ଅକ୍ରମଣ ବିରୁଦ୍ଧରେ ଚାରିଆଡ଼େ ସଂଗ୍ରାମ ଆରମ୍ଭ କଲେ । ୟୁରୋପର ଯେଉଁ ସବୁ ଦେଶ ସ୍ୱାଧୀନତା ହରାଇ ଫାସିଷ୍ଟ କବଳରେ ପଡ଼ିଲେ ସେମାନେ ସ୍ୱାଧୀନତା ପାଇଁ ଲଢ଼େଇ ଚଳାଇଲେ ।

ଫାସିଷ୍ଟବାଦ ସାରା ଦୁନିଆ ଜୟ କରିବା ପାଇଁ ଶେଷକୁ ଦୁନିଆର ଏକମାତ୍ର ସର୍ବହରାର ଦେଶ ସୋଭିଏଟ ରୁଷ ଉପରେ ଆକ୍ରମଣ କଲା । ଦୁନିଆର ପ୍ରତ୍ୟେକ ଦେଶର ସ୍ୱାଧୀନତା ଫାସିଷ୍ଟବାଦ ଯୋଗୁ ବିପଦଗ୍ରସ୍ତ ହେଲା । ତେଣୁ ପ୍ରତ୍ୟେକ ଦେଶର ଶ୍ରମିକଶ୍ରେଣୀ ଏକଜୁଟ ହୋଇ ଫାସିଷ୍ଟବାଦକୁ ଲୋପ କରିବା ପାଇଁ ଓ ନିଜର ଜାତୀୟ ସ୍ୱାଧୀନତା ଓ ସାର୍ବଭୌମତ୍ୱ ପାଇଁ ସଂଗ୍ରାମ କଲେ । ସେଥିପାଇଁ ଯୁଦ୍ଧ ଭିତରେ ପ୍ରତ୍ୟେକ ଦେଶର ଶ୍ରମିକ ଶ୍ରେଣୀର ପ୍ରଧାନ ସ୍ଲୋଗାନ ହେଲା ଫାସିଷ୍ଟବାଦ ବିରୁଦ୍ଧରେ ସଂଗ୍ରାମ । ଏହା ସଙ୍ଗେ ସଙ୍ଗେ ସମସ୍ତ ପୁଞ୍ଜିବାଦୀ ଦେଶରେ ଶ୍ରମିକ ଶ୍ରେଣୀ ନିଜର ନଗଦ ଦାବୀ ପାଇଁ ଆବାଜ ଉଠାଇଲେ । ଉପନିବେଶରେ ଯୁଦ୍ଧର ବୋଝ ବିରୁଦ୍ଧରେ, ନିଜ ଦେଶର ସ୍ୱାଧୀନତା ଓ ମୁକ୍ତି ଏବଂ ଫାସିଷ୍ଟବାଦ ତଥା ସାମ୍ରାଜ୍ୟବାଦର ଲୋପ ପାଇଁ ସଂଗ୍ରାମ ହେଲା ମଇ ଦିବସର ଡାକରା ।

## ଫାସିଷ୍ଟ ବିରୋଧୀ ଯୁଦ୍ଧ ପରେ

୨ୟ ମହାଯୁଦ୍ଧରେ ଫାସିଷ୍ଟ ଜର୍ମାନୀ, ଇଟାଲି ଓ ଜାପାନ ପରାସ୍ତ ହେଲେ । ପୃଥିବୀର ସାମ୍ରାଜ୍ୟବାଦ ଦୁର୍ବଳ ହୋଇ ପଡ଼ିଲା । ଫାସିଷ୍ଟ ବିରୋଧୀ ଯୁଦ୍ଧ ଭିତରୁ ଜନ୍ମ ଲଭ କଲା ୟୁରୋପରେ ଜନତାର ଗଣତନ୍ତ୍ର । ସାମ୍ରାଜ୍ୟବାଦ ଫାସିଷ୍ଟମାନଙ୍କର କବଳରୁ ମୁକ୍ତ ହୋଇ ଏହି ଦେଶଗୁଡ଼ିକ ନୂଆ ରକମର ସମାଜ ବ୍ୟବସ୍ଥା ଗଢ଼ିଲେ । ପୁଞ୍ଜିବାଦୀ ଶ୍ରେଣୀର ସ୍ୱାର୍ଥ ଦୃଷ୍ଟିରୁ ଶାସନ ନଚାଲି ଜନତାର ସ୍ୱାର୍ଥ ଦୃଷ୍ଟିରୁ ଶାସନ ପରିଚାଳିତ ହେଲା । କମ୍ୟୁନିଷ୍ଟ ପାର୍ଟି ନେତୃତ୍ୱରେ ଦେଶର ଶ୍ରମିକ, କୃଷକ, ମଧ୍ୟବିତ୍ତ ଓ ମେହନତକାରୀ ଜନତାର ସରକାର ଗଢ଼ା ହେଲା । ଚିରଦିନ ପାଇଁ ପୁଞ୍ଜିବାଦୀ ଶୋଷଣ ଏ ଦେଶମାନଙ୍କରୁ ଲୋପ ପାଇଲା । ଜନତାର ଗଣତନ୍ତ୍ର ଭିତରେ ଏ ଏ ଦେଶଗୁଡ଼ିକ ଅଗ୍ରଗତି କଲେ ସାମ୍ୟବାଦୀ ଶୋଷଣ ବିହୀନ ସମାଜ ପ୍ରତିଷ୍ଠା ଆଡ଼କୁ । ଦୁନିଆ ଦୁଇଟି ଶିବିରରେ ବିଭକ୍ତ ହେଲା । ଆମେରିକା ନେତୃତ୍ୱରେ ପୃଥିବୀର ସାମ୍ରାଜ୍ୟବାଦୀମାନଙ୍କର ଗୋଟିଏ ଶିବିର ଓ ଅନ୍ୟଟି ସୋଭିଏତ୍ ୟୁନିଅନ ନେତୃତ୍ୱରେ ବିଶ୍ୱ ଜନସାଧାରଣଙ୍କର ଶିବିର । ପ୍ରଥମ ଯୁଦ୍ଧ ପରେ ପୁଞ୍ଜିବାଦର ଯେଉଁ ସାଧାରଣ ସଙ୍କଟ ଦେଖାଯାଇଥିଲା । ତାହା ଦ୍ୱିତୀୟ ମହାଯୁଦ୍ଧ ପରେ ଚରମ ସୀମାରେ ପହଞ୍ଚିଲା । ଜନତାର ଶକ୍ତି ପୃଥିବୀରେ ଦୃଢ଼ତର ହେଲା । ସାମ୍ରାଜ୍ୟବାଦୀମାନେ ଭାବିଥିଲେ ଯେ ଯୁଦ୍ଧ ଜରିଆରେ ଶ୍ରମିକ ଓ ଜନସାଧାରଣଙ୍କର ମୁକ୍ତି ଆନ୍ଦୋଳନକୁ ଧ୍ୱଂସ କରିଦେବେ । କିନ୍ତୁ ଫଳ ହେଲା ଓଲଟା । ଯୁଦ୍ଧ ଭିତରେ

ପୁଞ୍ଜିବାଦ ଶକ୍ତିଶାଳୀ ହେବା ପରିବର୍ତ୍ତେ ଆହୁରି ଦୁର୍ବଳ ହେବାକୁ ଲାଗିଲା । ଶ୍ରମିକ-ଶ୍ରେଣୀ ଓ ଜନତାର ଆନ୍ଦୋଳନ ଧ୍ୱଂସ ହେବା ପରିବର୍ତ୍ତେ ଶକ୍ତିଶାଳୀ ହେବାକୁ ଲାଗିଲା । ପ୍ରଥମ ମହାଯୁଦ୍ଧ ପରେ ଦୁନିଆର ଏକଷଷ୍ଠାଂଶରେ ପୁଞ୍ଜିବାଦ ଲୋପ ପାଇଲା ଓ ସର୍ବହରାର ରାଷ୍ଟ୍ର ସୋଭିଏତ୍ ୟୁନିଅନ ପ୍ରତିଷ୍ଠିତ ହେଲା । ଦ୍ୱିତୀୟ ମହାଯୁଦ୍ଧ ପରେ ଦୁନିଆର ୨୫୦ କୋଟି ଜନତା ଭିତରୁ ୮୦ କୋଟି ଲୋକଙ୍କ ଭିତରେ ପୁଞ୍ଜିବାଦ ଚିରଦିନ ପାଇଁ ଲୋପ ପାଇଲା ଓ କମ୍ୟୁନିଷ୍ଟ ପାର୍ଟି ନେତୃତ୍ୱରେ ଜନତାର ଗଣତନ୍ତ୍ର ଗଢ଼ି ଉଠିଲା । ପ୍ରତ୍ୟେକ ପୁଞ୍ଜିବାଦୀ ଦେଶରେ ଶ୍ରମିକ ଆନ୍ଦୋଳନ ଶକ୍ତିଶାଳୀ ହେଲା । ଫ୍ରାନ୍ସ, ଇଟାଲି ଭଳି ଦେଶରେ ବିରାଟ କମ୍ୟୁନିଷ୍ଟ ପାର୍ଟି ଦେଶରେ ଜାତୀୟ ନେତୃତ୍ୱ ହିସାବରେ ଗଢ଼ି ଉଠିଲେ । ସମସ୍ତ ଦୁନିଆର ଶ୍ରମିକ ଆନ୍ଦୋଳନ ଦଳମତ ନିର୍ବିଶେଷରେ ବିଶ୍ୱ ଟ୍ରେଡ୍ ୟୁନିଅନ ଫେଡ଼େରେସନ ଭିତରେ ସଙ୍ଗଠିତ ହେଲା । ଶ୍ରମିକ ଆନ୍ଦୋଳନର ଏହା ହେଉଛି ଏକ ଐତିହାସିକ ଘଟଣା ।

ପୃଥିବୀରେ ତୃତୀୟ ଯୁଗାନ୍ତକାରୀ ଘଟଣା ହେଉଛି ଚୀନ ଜନତାର ଗଣତନ୍ତ୍ର ପ୍ରତିଷ୍ଠା । ପୃଥିବୀର ୫୦କୋଟି ଜନସାଧାରଣ ଉପନିବେଶିକ ଅବସ୍ଥାରୁ ମୁକ୍ତ ହେଲେ ଓ ସାମ୍ୟବାଦ ପ୍ରତିଷ୍ଠା ଦିଗରେ ଅଗ୍ରଗତି କଲେ । ଏହା ପୃଥିବୀର ଉପନିବେଶରେ ଜନତା ଆଗରେ ଗୋଟିଏ ନୂଆ ଆଦର୍ଶ ଓ ପ୍ରେରଣା । ପୁଞ୍ଜିବାଦର ସଙ୍କଟ ଚରମ ସୀମାରେ ପହଞ୍ଚିଲା ।

ଜନତାର ଏହି ଜୟଯାତ୍ରାରେ ଏବଂ ପୁଞ୍ଜିବାଦର ସଙ୍କଟରେ ଆତଙ୍କିତ ହୋଇ ସାମ୍ରାଜ୍ୟବାଦୀମାନେ ପୁଣି ଫାସିଜିମ ପ୍ରତିଷ୍ଠା କରିବା ପାଇଁ ଉଦ୍ୟମ କରୁଛନ୍ତି । ପୁଞ୍ଜିବାଦୀ ଦୁନିଆରେ ଉତ୍ପାଦନ କମୁଛି ଓ ଜୀବନ ଧାରଣର ସ୍ତର ତଳକୁ ତଳକୁ ଯାଉଛି । ସାମ୍ରାଜ୍ୟବାଦୀମାନେ ନିଜର ଅସ୍ତିତ୍ୱ ବଜାୟ ରଖିବାର ଏକମାତ୍ର ପନ୍ଥା ନେଇଛନ୍ତି ଯୁଦ୍ଧ । ତେଣୁ ଯୁଦ୍ଧ ବିରୁଦ୍ଧରେ ଶାନ୍ତି ପ୍ରତିଷ୍ଠାହିଁ ଆଜି ସାମ୍ରାଜ୍ୟବାଦକୁ ଧ୍ୱଂସ କରିବାର ଏକମାତ୍ର ପନ୍ଥା ।

ମଇ ଦିବସ ୨ୟ ମହାଯୁଦ୍ଧ ପରେ ଆହୁରି ଉଜ୍ଜ୍ୱଳତର ହୋଇଛି । ୧୮୮୫-୮୭ର ମଇ ଦିବସ ଆଜି ପରିଣତ ହୋଇଛି ଦୁନିଆର ପ୍ରଧାନ କେନ୍ଦ୍ର ହିସାବରେ । ଆଜି ଶ୍ରମିକ ୮ଘଣ୍ଟା କାମ ପାଇଁ କେବଳ ସଂଗ୍ରାମ କରୁନାହିଁ । ସେଠାରେ ଆଜି ମଇ ଦିବସ ସୀମାବଦ୍ଧ ନୁହେଁ ।

ଆଜି ଦୁନିଆରେ ବିରାଟ ପରିବର୍ତ୍ତନ ହୋଇଛି । ଶ୍ରମିକଶ୍ରେଣୀ ନିଜର ସମାଜବାଦୀ ଦୁନିଆ ପ୍ରତିଷ୍ଠିତ କରିଛି ଏବଂ ଦୁନିଆର ପ୍ରଧାନ ଶକ୍ତିମାନଙ୍କର ଭାରସାମ୍ୟକୁ ବଦଳାଇ ଦେଇଛି । ସାମ୍ରାଜ୍ୟବାଦର ଚରମ ସଙ୍କଟ ଉଭୟ ଅର୍ଥନୈତିକ ଏବଂ ରାଜନୈତିକ କ୍ଷେତ୍ରରେ ପ୍ରତିପାଦିତ ହୋଇଛି । ଏସିଆର ଜନସାଧାରଣ କେବଳ ଯେ ସାମ୍ରାଜ୍ୟବାଦୀ ଶିକୁଳିକୁ ଭାଙ୍ଗି ଆଗେଇ ଚାଲିଛନ୍ତି ତା ନୁହେଁ, ଭିଏତନାମ, କୋରିଆ, କାମ୍ବୋଡ଼ିଆ ଓ ଲାଓସ ପ୍ରଭୃତି ସମାଜବାଦୀ ଦେଶ ଗଢ଼ିଉଠିଛି । ଅନ୍ୟାନ୍ୟ

ଦେଶରୁ ସାମ୍ରାଜ୍ୟବାଦ ପରାଜିତ ହୋଇଛି । ଆରବ ଜାତି ସମୂହ ଆଜି ସାମ୍ରାଜ୍ୟବାଦ ବିରୁଦ୍ଧରେ ସଂଗ୍ରାମରେ ଆଗେଇଛନ୍ତି । ଚୀନର କମ୍ୟୁନିଷ୍ଟ ନେତାମାନଙ୍କର ସୋଭିଏତ ପ୍ରତି ତଥା ଆନ୍ତର୍ଜାତିକ କମ୍ୟୁନିଷ୍ଟ ଆନ୍ଦୋଳନ ପ୍ରତି ବିପ୍ଳବ ବିରୋଧୀ ମନୋଭାବ ସତ୍ତ୍ୱେ ଏବଂ ସେମାନଙ୍କର ଏକ ଜାତୀୟତାବାଦୀ ନୀତି ଗ୍ରହଣ ସତ୍ତ୍ୱେ ସାମ୍ରାଜ୍ୟବାଦ ଦିନକୁ ଦିନ ଧ୍ୱଂସ ମୁଖକୁ ଯାଉଛି ।

ଅନ୍ୟ ପକ୍ଷରେ ସମାଜବାଦୀ ଦୁନିଆ ଦିନକୁ ଦିନ ଅର୍ଥନୈତିକ, ରାଜନୈତିକ ସାମାଜିକ ଓ ସାମରିକ କ୍ଷେତ୍ରରେ ଅଗ୍ରଗତି କରି ଚାଲିଛି । ସେଠାରେ ସଙ୍କଟ ନାହିଁ, ମୁଦ୍ରାସ୍ଫୀତି, ଦରଦାମ ବୃଦ୍ଧି ପ୍ରଭୃତି ନାହିଁ ।

ଗତ କେତେ ବର୍ଷ ମଧ୍ୟରେ ସୋଭିଏତ୍ ୟୁନିଅନ ଓ ଅନ୍ୟାନ୍ୟ ସମାଜବାଦୀ ଦେଶ ତଥା ଦୁନିଆର ଶାନ୍ତିକାମୀ ଜନସାଧାରଣଙ୍କର ଅଦମ୍ୟ ଉଦ୍ୟମ ଫଳରେ 'ଦେତାନ୍ତ' ବା ଶାନ୍ତି ଅବସ୍ଥା ପାଇଁ ଆନ୍ଦୋଳନ ବହୁ ପରିମାଣରେ ସଫଳ ହୋଇଛି । ପୁଞ୍ଜିବାଦୀ ଦେଶମାନଙ୍କର ଶ୍ରମିକ ଶ୍ରେଣୀ ସଂଗ୍ରାମର ଅଭିବୃଦ୍ଧି ହୋଇଛି । ପୂର୍ବତନ ଉପନିବେଶ ଓ ନୂତନ ବିକାଶଶୀଳ ରାଷ୍ଟ୍ରମାନଙ୍କର ସାମ୍ରାଜ୍ୟବାଦ ବିରୋଧୀ ଆନ୍ଦୋଳନ ବ୍ୟାପକ ହୋଇଛି । ପୃଥିବୀରୁ ଉପନିବେଶ ଦ୍ରୁତଗତିରେ ଲୋପ ପାଉଛି । ନବ ଉପନିବେଶବାଦ ପ୍ରତିଷ୍ଠା କରିବା ପାଇଁ ସାମ୍ରାଜ୍ୟବାଦୀମାନଙ୍କର ସମସ୍ତ ଚେଷ୍ଟା ସାମ୍ରାଜ୍ୟବାଦ ବିରୋଧ ମୁକ୍ତିକାମୀ ଜନସାଧାରଣଙ୍କର ସଂଗ୍ରାମ ଫଳରେ ପ୍ରତିଦିନ ପ୍ରତିହତ ହେଉଛି । ପୁଞ୍ଜିବାଦୀ ଦେଶର ଶ୍ରମିକଶ୍ରେଣୀ ଓ ମେହନତକାରୀ ଜନସାଧାରଣଙ୍କର ସଂଗ୍ରାମ ଏବଂ ପୂର୍ବତନ ଉପନିବେଶର ଜନସାଧାରଣଙ୍କର ସଂଗ୍ରାମ ମିଳିତ ଭାବରେ ସାମ୍ରାଜ୍ୟବାଦକୁ ଆଜି ଦୁର୍ବଳ କରୁଛନ୍ତି । ଏହି ସମସ୍ତ ଆନ୍ଦୋଳନ ଓ ଶକ୍ତିବିନ୍ୟାସ ଆନ୍ତର୍ଜାତିକ ଅବସ୍ଥାକୁ ଶାନ୍ତି ଓ ସମାଜବାଦ ସପକ୍ଷରେ ଆଗେଇ ନେଇଛି ।

ସାମ୍ରାଜ୍ୟବାଦର ସାଧାରଣ ସଙ୍କଟ କେବଳ ଯେ ପରିମାଣଗତ ଭାବରେ ବୃଦ୍ଧି ପାଇଛି ତା ନୁହେଁ, ଏହା ଗୁଣାତ୍ମକ ଭାବରେ ମଧ୍ୟ ପରିବର୍ତ୍ତିତ ହେଉଛି, ସେଥିପାଇଁ ଏହାର ଅର୍ଥନୈତିକ ଭିତ୍ତି ଦୋହଲି ଯାଇଛି ଏବଂ ମୁଦ୍ରାସ୍ଫୀତି, ବେକାରି ଏବଂ ଦରଦାମ ବୃଦ୍ଧି ଅତିମାତ୍ରାରେ ଦେଖାଯାଉଛି । ମୁଦ୍ରା ସମ୍ପର୍କୀୟ ସଙ୍କଟ ବ୍ୟାପକ ହେଉଛି । ସାମ୍ରାଜ୍ୟବାଦୀ ଦେଶ ଏବଂ ବିକାଶୋନ୍ମୁଖୀ ଦେଶମାନଙ୍କ ଭିତରେ ଦ୍ୱନ୍ଦ୍ୱ ଓ ମତପାର୍ଥକ୍ୟ ମଧ୍ୟ ସମସ୍ତ କ୍ଷେତ୍ରରେ ବୃଦ୍ଧି ପାଇଛି । ତା ସାଙ୍ଗକୁ ଶକ୍ତି (ଜାଳେଣି) ସଙ୍କଟ ଅର୍ଥନୈତିକ ସଙ୍କଟକୁ ଜଟିଳ କରି ପକାଉଛନ୍ତି । ଆମେରିକା ଯୁକ୍ତରାଷ୍ଟ୍ର ଏଥିପାଇଁ ଆରବ ଦେଶମାନଙ୍କ ବିରୁଦ୍ଧରେ ସାମରିକ ପଦକ୍ଷେପ ନେବାପାଇଁ ଧମକ ଦେଉଛି । କେବଳ ସେତିକି ନୁହେଁ, ମାର୍କିନ ଯୁକ୍ତରାଷ୍ଟ୍ର ଏବଂ ପଶ୍ଚିମ ୟୁରୋପୀୟ ଦେଶ ଓ ଜାପାନ ମଧ୍ୟରେ ଦ୍ୱନ୍ଦ୍ୱ ଓ ମତପାର୍ଥକ୍ୟ ବୃଦ୍ଧି ପାଉଛି । ତା ସାଙ୍ଗକୁ ମଧ୍ୟ ବୁର୍ଜୁଆ ଗଣତନ୍ତ୍ରର ରାଜନୈତିକ, ଆଦର୍ଶଗତ ଓ ନୈତିକ ସଙ୍କଟ ସମସ୍ତ କ୍ଷେତ୍ରରେ ପରିସ୍ଫୁଟ ହେଉଛି ।

ଦୁନିଆର ଏହି ନୂତନ ପରିସ୍ଥିତିରେ ଶ୍ରମିକଶ୍ରେଣୀ ଓ ଜନସାଧାରଣଙ୍କ ପାଇଁ ଏକ ନୂତନ ସୁଯୋଗ ଓ ସମ୍ଭାବନା ଦେଖାଦେଇଛି ।

ଭାରତବର୍ଷରେ ଅବସ୍ଥା ଜଟିଳ ହେଲେ ମଧ୍ୟ ଜନସାଧାରଣଙ୍କର ଅଗ୍ରଗତି ପାଇଁ ନୂତନ ସମ୍ଭାବନା ଦେଖାଦେଇଛି । ଭାରତ ପୁଞ୍ଜିବାଦୀ ଦୁନିଆର ଅର୍ଥନୀତି ସହିତ ନିଜକୁ ସଂଯୋଗ କରି ରଖିବା ଫଳରେ ନିଜର ସଙ୍କଟକୁ ଘନୀଭୂତ କରୁଛି । ଭାରତରେ ୧୯୪୭ ପରେ ଏକ ପୁଞ୍ଜିବାଦୀ ଅର୍ଥନୀତି ବିକଶିତ ହେଉଛି, ଦେଶରେ ଏକଚାଟିଆ ପୁଞ୍ଜିର ଦ୍ରୁତ ବିକାଶ ହୋଇଛି । ସରକାର ସେଇ ପୁଞ୍ଜିବାଦୀ ଶ୍ରେଣୀର ସରକାର । ସେଥିପାଇଁ ଆଜି ଭାରତରେ ପୁଞ୍ଜିବାଦୀ ସଙ୍କଟ ମଧ୍ୟ ଦେଖା ଦେଇଛି । ଏହାର ବିଶେଷ ରୂପ ହେଉଛି ବ୍ୟାପକ ମୁଦ୍ରାସ୍ଫୀତି ଏବଂ ଅସମ୍ଭବ ରକମର ଦରଦାମ ବୃଦ୍ଧି ଫଳରେ ଜନସାଧାରଣଙ୍କର କ୍ରୟଶକ୍ତିର ହ୍ରାସ । ବେକାରି ଦିନୁଦିନ ବଢ଼ୁଛି । କଳାଟଙ୍କାର ବ୍ୟାପକତା ବଢ଼ିଛି ଏବଂ ଏକ ସମାନ୍ତରାଳ ଅର୍ଥନୀତିରେ ଏହା ପରିଣତ ହେଉଛି, ବ୍ୟାପକ ଭାବରେ ମହାଜନ୍ ଦୋକାନୀ ଓ ଚୋରାବେପାରୀମାନଙ୍କର ଶକ୍ତି ବୃଦ୍ଧି ପାଉଛି, ବହୁ କ୍ଷେତ୍ରରେ ଏକଚାଟିଆ ପୁଞ୍ଜିପତି ଓ ଅସାଧୁ ଶିଳ୍ପପତିମାନେ ଉତ୍ପାଦନ ଶକ୍ତିକୁ ସଙ୍କୁଚିତ କରୁଛନ୍ତି । ଦେଶରେ ଭୂସଂସ୍କାର ସଫଳ ଭାବରେ କାର୍ଯ୍ୟକାରୀ ହେଉ ନଥିବାରୁ ଏବଂ ପ୍ରାକୃତିକ ବିପର୍ଯ୍ୟୟ ବିରୁଦ୍ଧରେ ସରକାର ମୌଳିକ ପଦକ୍ଷେପ ନେଉ ନ ଥିବାରୁ ଦେଶରେ ବ୍ୟାପକ ଖାଦ୍ୟାଭାବ ଦେଖା ଦେଇଛି । ଏକଚାଟିଆ ପୁଞ୍ଜିପତି ଓ ଲାଭଖୋର ବ୍ୟବସାୟୀ ଏକ ମେଣ୍ଟ ଗଠନ କରିଛନ୍ତି । ଗ୍ରାମାଞ୍ଚଳରେ ଏକଚାଟିଆ ପୁଞ୍ଜିର ସ୍ୱାର୍ଥ ଦୃଷ୍ଟିରୁ କୃଷି ପରିଚାଳିତ ହେଉଥିବାରୁ ଚାଷୀକୁ ଉଚିତ ମୂଲ୍ୟ ମିଳୁନାହିଁ । ସରକାର ମଧ୍ୟ ଏକଚାଟିଆ ପୁଞ୍ଜିପତି ଓ ବିଦେଶୀ ବହୁଦେଶୀୟ ଶିଳ୍ପାନୁଷ୍ଠାନଗୁଡ଼ିକୁ ବହୁ ସୁବିଧା ସୁଯୋଗ ଦେଉଛି । ଶ୍ରମିକମାନଙ୍କ ବିରୁଦ୍ଧରେ ଦରମା ବଢ଼ାଇବାକୁ ନ ଦେବା, ମଜୁରୀ ସଂକୋଚନ କରିବା ଏସମା ଓ 'ନାଶା' ଆଇନ ପ୍ରଭୃତି ବ୍ୟବହାର କରି ସେମାନଙ୍କୁ ଦମନ କରିବା ପାଇଁ ସରକାର ଉଦ୍ୟମ କରି ଚାଲିଛି । ଆଜି ଦେଶର ଅର୍ଥନୀତି ଏକ ବିରାଟ ସଙ୍କଟରେ ପରିଣତ ହୋଇଛି । ଅମଲାତନ୍ତ୍ର ନିଜକୁ ବହୁ ଦିଗରୁ ସୁଦୃଢ଼ କରିଛି । ଆଧୁନିକ ଯନ୍ତ୍ରପାତି ବ୍ୟବହାର ନାମରେ କମ୍ପ୍ୟୁଟର ପ୍ରଭୃତିର ବ୍ୟବହାର ବେକାରି ଅବସ୍ଥାକୁ ଆହୁରି ତୀବ୍ର କରିଛି ।

ଏ ସଙ୍କଟକୁ ଜନସାଧାରଣଙ୍କ ଉପରେ ଚପାଇ ଦେଇ ନିଜର ସମସ୍ୟା ସମାଧାନ କରିବାକୁ ପୁଞ୍ଜିବାଦୀ ଶ୍ରେଣୀ ଉଦ୍ୟମ କରୁଛି । କିନ୍ତୁ ଶ୍ରମିକ ଶ୍ରେଣୀ ଓ ଅନ୍ୟାନ୍ୟ ମେହନତକାରୀ ଜନସାଧାରଣ ଏହା ବିରୁଦ୍ଧରେ ବ୍ୟାପକ ସଂଗ୍ରାମ କରୁଛନ୍ତି । ଶ୍ରମିକମାନେ ଶତ ବାଧା ପ୍ରତିବନ୍ଧକ ସତ୍ତ୍ୱେ ଏକଜୁଟ ହେଉଛନ୍ତି । କୃଷକମାନେ ଏବଂ ବିଶେଷତଃ ଭୂମିହୀନ ଓ ଗରିବ ଚାଷୀମାନେ

ଗ୍ରାମାଞ୍ଚଳରେ ଭୂସଂସ୍କାର ଏବଂ ସାମନ୍ତବାଦୀ ଓ ଅର୍ଦ୍ଧସାମନ୍ତବାଦୀ ବ୍ୟବସ୍ଥା ବିରୁଦ୍ଧରେ ସଂଗ୍ରାମ ଚଳାଇଛନ୍ତି । ମଧ୍ୟବିତ୍ତ ଶ୍ରେଣୀ ମଧ୍ୟ ଅନ୍ୟାନ୍ୟମାନଙ୍କ ସହିତ ହାତ ମିଳାଇ ସଂଗ୍ରାମରେ ଚାଲିଛନ୍ତି । ଛାତ୍ର ଓ ଯୁବକମାନେ ବେକାରି ଓ ବେରୋଜଗାରି ବିରୁଦ୍ଧରେ ସଂଗ୍ରାମରେ ଦୃଢ଼ ଭାବରେ ଗତି କରୁଛନ୍ତି । ଦରଦାମ ବୃଦ୍ଧି ପ୍ରଭୃତି ବିରୁଦ୍ଧରେ ଦେଶରେ ବ୍ୟାପକ ଜନସାଧାରଣ ଆନ୍ଦୋଳନ କରୁଛନ୍ତି । ଏହାଛଡ଼ା ସାମ୍ରାଜ୍ୟବାଦ ଓ ବିଶେଷତଃ ମାର୍କିନ ସାମ୍ରାଜ୍ୟବାଦୀମାନଙ୍କର ଚକ୍ରାନ୍ତ ବିରୁଦ୍ଧରେ ଦେଶ ଭିତରେ ବ୍ୟାପକ ବିକ୍ଷୁବ୍ଧ ଅବସ୍ଥା ଗଢ଼ି ଉଠୁଛି ଏବଂ ସମାଜବାଦୀ ଦେଶମାନଙ୍କ ସହିତ ବନ୍ଧୁତା ପାଇଁ ଜନ ସମର୍ଥନ ଓ ଆନ୍ଦୋଳନ ଶକ୍ତିଶାଳୀ ହେଉଛି । ଜନସାଧାରଣ ବୁଝିବାକୁ ଆରମ୍ଭ କରିଛନ୍ତି ଯେ ଭାରତର ଏ ସଙ୍କଟର କାରଣ ହେଉଛି ଏହାର ପୁଞ୍ଜିବାଦୀ ମାର୍ଗ । ଏହାକୁ ପରିହାର କରି ଏକ ଅଣ-ପୁଞ୍ଜିବାଦୀ ମାର୍ଗରେ ଚାଲିଲେ ହିଁ ସମସ୍ୟାଗୁଡ଼ିକର ସମାଧାନ ସମ୍ଭବ ।

ତେଣୁ ଏକଚାଟିଆ ପୁଞ୍ଜିବାଦୀ ଶ୍ରେଣୀ ଓ ଅନ୍ୟାନ୍ୟ ପ୍ରତିକ୍ରିୟାଶୀଳ ଶକ୍ତି ଓ ଶ୍ରେଣୀମାନେ ଆଜି ବେଶ ବୁଝି ପାରିଲେଣି ଯେ ଆଉ ପୁରୁଣା ବୁର୍ଜୁଆ ଗଣତାନ୍ତ୍ରିକ ପଦ୍ଧତିରେ ଶାସନ ପରିଚାଳନା କରିବା ସମ୍ଭବ ନୁହେଁ । ସରକାରର ଜନବିରୋଧୀ ନୀତି ଓ କାର୍ଯ୍ୟକୁ ପ୍ରତିକ୍ରିୟାଶୀଳ, ବିଚ୍ଛେଦକାରୀ ଓ ସାମ୍ପ୍ରଦାୟିକବାଦୀମାନଙ୍କ କାର୍ଯ୍ୟକୁ ଅଧିକ ସୁଗମ କରୁଛି । ତାହାର ସୁଯୋଗ ନେଇ ସେମାନେ ଜନସାଧାରଣଙ୍କୁ ବିଭ୍ରାନ୍ତ କରିବାକୁ ଚେଷ୍ଟା କରୁଛନ୍ତି ।

ତେଣୁ ଦେଶ ଭିତରେ ପ୍ରକୃତ ସଂଗ୍ରାମ ହେଉଛି ପ୍ରତିକ୍ରିୟାଶୀଳ ଶକ୍ତି ଓ ପ୍ରଗତି ପାଇଁ ସଂଗ୍ରାମ କରୁଥିବା ଜନସାଧାରଣଙ୍କ ଭିତରେ । ପ୍ରତିକ୍ରିୟାଶୀଳ ଶ୍ରେଣୀ ଓ ଶକ୍ତିମାନଙ୍କ ବିରୁଦ୍ଧରେ ସଂଗ୍ରାମ ଚଳାଇ ଦେଶର ଗଣତନ୍ତ୍ର ଓ ପ୍ରଗତିକୁ ସୁରକ୍ଷା କରିବା ସକାଶେ ଶ୍ରମିକ ଶ୍ରେଣୀକୁ ଗ୍ରାମ୍ୟ ସର୍ବହରା ଓ ଗରିବ କୃଷକମାନଙ୍କୁ ଭିତ୍ତି କରି ଶ୍ରମିକ କୃଷକ ଏକତା ପ୍ରତିଷ୍ଠା କରିବା ପାଇଁ ସଂଗ୍ରାମ କରିବାକୁ ହେବ । ବ୍ୟାପକ ଜାତୀୟ ଗଣତାନ୍ତ୍ରିକ ସାମ୍ମୁଖ୍ୟ ଗଠନ କରି ଜାତୀୟ ଗଣତାନ୍ତ୍ରିକ ବିପ୍ଳବକୁ ସମ୍ପୂର୍ଣ୍ଣ କରିବା ପାଇଁ ପଦକ୍ଷେପ ନେବାକୁ ହେବ ।

ଏ ଦିଗରେ ନିର୍ଦ୍ଦିଷ୍ଟ ଅଗ୍ରଗତି ପାଇଁ ପୁଞ୍ଜିବାଦୀ ସରକାରର ଜନବିରୋଧୀ ନୀତି ବିରୁଦ୍ଧରେ ସଂଗ୍ରାମ କରିବା ସଙ୍ଗେ ସଙ୍ଗେ ଦକ୍ଷିଣପନ୍ଥୀ ପ୍ରତିକ୍ରିୟାଶୀଳ ଶ୍ରେଣୀ ଓ ଶକ୍ତିମାନଙ୍କ ବିରୁଦ୍ଧରେ ବ୍ୟାପକ ସଂଗ୍ରାମ ପରିଚାଳିତ କରିବାକୁ ହେବ । ଦୁଇଟି-ଯାକ ସଂଗ୍ରାମ ଏକ ସମୟରେ ଚାଲିବ, ଯେକୌଣସି କେବଳ ଗୋଟିଏ ସଂଗ୍ରାମରେ ଲାଗିବା ଶ୍ରମିକଶ୍ରେଣୀ ପକ୍ଷରେ ଏକ ମାରାତ୍ମକ ଭୁଲ ହେବ ।

ଭାରତବର୍ଷର ଜନସାଧାରଣଙ୍କ ସ୍ୱାର୍ଥ ଦୃଷ୍ଟିରୁ ଆଜି ଯୁଦ୍ଧବନ୍ଦ ଓ ପାରମାଣ-ବିକ ନିରସ୍ତ୍ରୀକରଣ ଅତି ଆବଶ୍ୟକ । ଶାନ୍ତି ପାଇଁ ଆନ୍ଦୋଳନ ଓ ପୃଥିବୀର ଜନ-ସାଧାରଣଙ୍କ [illegible]

ସେଥିପାଇଁ ମଇ ଦିବସରେ ଆଜି ଶ୍ରମିକଶ୍ରେଣୀ ନିଜର ୮ ଘଣ୍ଟା ବା ନଗଦ ଦାବୀ ପାଇଁ କେବଳ ଡାକରା ଦେବ ନାହିଁ । ଯେଉଁଠି ସେ ରାଷ୍ଟ୍ର ପ୍ରତିଷ୍ଠା କରିଛି, ସେଠାରେ ତାକୁ ସବୁମତେ ଟାଣ କରିବା ପାଇଁ ଏବଂ ଯେଉଁଠି ତାହା ହୋଇନାହିଁ ସେଠାରେ ନିଜର ଶକ୍ତି ଉପରେ ବିଶ୍ୱାସ ରଖି ନିଜର ଦାବୀକୁ ଜୋରସୋରରେ ଉଠାଇବ । ପୁଞ୍ଜିବାଦୀ ସଂକଟର ବୋଝ ବିରୁଦ୍ଧରେ ସଂଗ୍ରାମର ହତିଆର ଉଠାଇବ । ସାମ୍ରାଜ୍ୟବାଦୀ ଷଡ଼ଯନ୍ତ୍ରକୁ ପଣ୍ଡ କରିବା ପାଇଁ ଓ ଦେଶରେ ପ୍ରତିକ୍ରିୟାଶୀଳ ଶକ୍ତିମାନଙ୍କର ଚକ୍ରାନ୍ତକୁ ଧୂଳିସାତ୍ କରି ଏକ ଶୋଷଣବିହୀନ ସମାଜ ଗଠନ ପଥରେ ଆଗେଇବା ପାଇଁ ଶପଥ ନେବ । ସମାଜବାଦୀ ଦୁନିଆ ଓ ଦୁନିଆର ମେହନତକାରୀ ଜନସାଧାରଣଙ୍କ ସହିତ ଏକତା ପ୍ରତିଷ୍ଠା ପାଇଁ ଆହ୍ୱାନ ଦେବ—ପୁଞ୍ଜିବାଦୀ ଶୋଷଣର ବୋଝ ବିରୁଦ୍ଧରେ ଦୁର୍ବାର ସଂଗ୍ରାମ ପାଇଁ ଶପଥ ନେବ ।

ଯୁଦ୍ଧ ବିରୁଦ୍ଧରେ ଓ ଶାନ୍ତି ପ୍ରତିଷ୍ଠା ପାଇଁ ତାର କାର୍ଯ୍ୟ ହେବ ପ୍ରଥମ—

ଦେଶର ତଥା ଆନ୍ତର୍ଜାତିକ କ୍ଷେତ୍ରରେ ନିଜର ସଂଗଠନକୁ ଶକ୍ତିଶାଳୀ କରି ଦଳମତ ଓ ଅନୁଷ୍ଠାନ ନିର୍ବିଶେଷରେ ଶ୍ରମିକ ଏକତା ପ୍ରତିଷ୍ଠା ପାଇଁ ଶ୍ରମିକ ଶ୍ରେଣୀ ମଇ ଦିବସରେ ଶପଥ ନେବ ।

ଶ୍ରମିକ ଶ୍ରେଣୀକୁ ବିଭେଦ କରିବାକୁ ପ୍ରତ୍ୟେକ ପୁଞ୍ଜିବାଦୀ ଦେଶ ଓ ଉପନିବେଶରେ ତଥା ଆନ୍ତର୍ଜାତିକ କ୍ଷେତ୍ରରେ ପ୍ରତିକ୍ରିୟାଶୀଳମାନେ ଚେଷ୍ଟା କରୁଛନ୍ତି । ବିଭେଦବାଦୀ ଚିନ୍ତାଧାରାର ପ୍ରସାର କରି ଶ୍ରମିକଶ୍ରେଣୀର ବୈପ୍ଳବିକ ଶ୍ରେଣୀ ଚେତନାକୁ କ୍ଷୁଣ୍ଣ କରିବା ସେଇମାନଙ୍କର ଏକ ବିରାଟ ଉଦ୍ୟମ । ସେମାନଙ୍କର ଷଡ଼ଯନ୍ତ୍ର ବିରୁଦ୍ଧରେ ନିର୍ମମ ସଂଗ୍ରାମ କରିବା ମଇ ଦିବସର ଗୋଟିଏ ବିରାଟ ତାତ୍ପର୍ଯ୍ୟ । ସେମାନଙ୍କ ବିରୁଦ୍ଧରେ ଲଗାତର ଆନ୍ଦୋଳନର ଡାକରା ଦେବ ମଇ ଦିବସ ।

ମଇ ଦିବସରେ ସୋଭିଏତ ୟୁନିଅନ, ସମାଜବାଦୀ ଦେଶମାନଙ୍କର ସରକାରମାନେ ପୃଥିବୀରେ ଶାନ୍ତି ପ୍ରତିଷ୍ଠା ପାଇଁ ସମସ୍ତ ବିଷୟରେ ଶାନ୍ତିପୂର୍ଣ୍ଣ ଆଲୋଚନା ଓ ଯୁଦ୍ଧର ବିରତି ପାଇଁ ଡାକରା ଦେବେ ।

ପ୍ରତ୍ୟେକ ଯାଗାରେ ଯୁଦ୍ଧଖୋର ସାମ୍ରାଜ୍ୟବାଦ ଜନତାର ଶକ୍ତି ଦେଖି ଆତଙ୍କିତ ହେବ । ତେଣୁ ଶ୍ରମିକ ଶ୍ରେଣୀ ଦୃଷ୍ଟି ଦେବ ଯେ ଶାନ୍ତି ଓ ଜନତାର ସ୍ୱାର୍ଥ ପାଇଁ ଆନ୍ତର୍ଜାତିକ ଭାବରେ ଏକ ମଇ ଦିବସ ହେବ ଜନତାର ଜୟଯାତ୍ରାର ଏକ ବିରାଟ ପ୍ରଦର୍ଶନୀ । ଆହୁରି ଜୋରରେ ଶ୍ରମିକ ଶ୍ରେଣୀ ମଇ ଦିବସକୁ ସଂଗ୍ରାମୀ କରି ପାଳନ କରିବ ।

**ମଇ ଦିବସ—ଜିନ୍ଦାବାଦ**